ଉତ୍କଳ ବାଚସ୍ପତି, ବାଗ୍ମୀ – ପ୍ରବର

# ଅଧ୍ୟାପକ
# ଗୌରୀ କୁମାର ବ୍ରହ୍ମା



କବିରାଜ ଶ୍ରୀ ଗୋପୀନାଥ ସେନାପତି

ଉତ୍କଳ ବାଚସ୍ପତି, ବାଗ୍ମୀ-ପ୍ରବର

# ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା



ଲେଖକ—**କବିରାଜ ଶ୍ରୀ ଗୋପୀନାଥ ସେନାପତି**

(ଶ୍ରୀ ନୀଳାଚଳ ବଣିକୋତ୍କଳ ପାଲ୍‌ଗାୟକ  ପରିଷଦର ଆନୁକୂଲ୍ୟରୁ)

ପୁସ୍ତକର ନାମ—

ଉତ୍କଳ ବାଚସ୍ପତି, ବାଗ୍ମୀ-ପ୍ରବର
ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା

ଲେଖକ—

କବିରାଜ ଶ୍ରୀ ଗୋପୀନାଥ ସେନାପତି
(ବାଣପୁର)

ପ୍ରକାଶକ—

ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଳଗାୟକ ପରିଷଦ ।
ଜଟଣୀ (ପୁରୀ)

ମୁଦ୍ରଣ—

ସୁନୀଲ ପ୍ରିଣ୍ଟର୍ସ, ଷ୍ଟେସନ ବଜାର, ଭୁବନେଶ୍ୱର

ମୂଲ୍ୟ—୪-୦୦ ମାତ୍ର

# ଦୁଇପଦ

ଗତ ଅଳ୍ପ କେତେବର୍ଷ ଧରି ମୁଁ ଭୁବନେଶ୍ୱରରେ ରହିବା ଭିତରେ ନିଖିଳୋତ୍କଳ ପାଲା ଗାୟକ ପରିଷଦ ସହିତ ନିବିଡ଼ ଭାବରେ ସଂପୃକ୍ତ ହୋଇ ଯାଇଛି । ମୋର ଆଜୀବନ ବନ୍ଧୁ, ନୂଆଖୁଣ୍ଟାର କବି ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ ଜାମାତା ଭାବରେ ମୁଁ ଆଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କୁ ୧୯୪୧ରୁ ଘନିଷ୍ଠ ଭାବରେ ଜାଣିଛି । ଜୀବନର ଦୀର୍ଘ ପଞ୍ଚଚାଳିଶ ବର୍ଷ ଧରି ମୁଁ ଊଣା ଅଧିକେ ତାଙ୍କ ପାଖେ ପାଖେ ରହି ଆସିଛି କହିଲେ ଚଳେ । ହସ ଖୁସିବେଳେ, ଦୁଃଖ ଦୁର୍ଦ୍ଦଶାବେଳେ ମଧ୍ଧ ଅଧାପକ ବ୍ରହ୍ମା ମୋ ନିକଟରେ ଅଛନ୍ତି । ମୁଁ ମଧ୍ଧ ପାଖେ ପାଖେ ଥାଇ ବନ୍ଧୁ (ୀଆ ଅନୁଭବ କରିଛି । ତାଙ୍କର ଆତ୍ମ ଜୀବନୀଟିଏ ଲେଖିବାପାଇଁ ମୁଁ ତାଙ୍କୁ ବରାବର କହି ଆସୁଛି । କିନ୍ତୁ ଉତ୍ତର ମିଳିଛି, "ସମୟ ଆସିନାହିଁ ।

ପୁଣି କେତେବର୍ଷ ଧରି ଅଧାପକ ବ୍ରହ୍ମା ଏହି ପାଲାଗାୟକ ପରିଷଦର ସଭାପତି ରହିବା ଭିତରେ ବହୁ ବରିଷ୍ଠ ସଭ୍ୟ ତାଙ୍କ ସହିତ ଆଲୋଚନା କରିଛନ୍ତି । ଖାଲି ଯେ ଓଡ଼ିଆ ସାହିତ୍ୟ ଏବଂ ସଂସ୍କୃତ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି, ତାହାନୁହେଁ । ତହିଁ ସଙ୍ଗେ ସଙ୍ଗେ ତାଙ୍କ ସାଧନାମୟ ଜୀବନ ଉପରେ ମଧ୍ଧ ଆଲୋଚନା ହୋଇଛି । ସର୍ବଶ୍ରୀ ଜଗନ୍ନାଥ ବେହେରା, ପାରେଶ୍ୱର ଶରଣ, ସୁଦର୍ଶନ ମହାପାତ୍ର, ଘନଶ୍ୟାମ ନାୟକ, ବଂଶୀଧର ମହାପାତ୍ର, କୁଳମଣି ଶତପଥୀ, ଚକ୍ରଧର ବାରିକ, ବୈଷ୍ଣବ ଚରଣ ପଣ୍ଡା, ଖଗେଶ୍ୱର ମାର୍ଥା ଏବଂ ଅନ୍ୟ ଅନେକ ଗାୟକ ବନ୍ଧୁ ବ୍ରହ୍ମାଙ୍କ ସହ ଆଲୋଚନା କରି ତାଙ୍କର ଅଧ୍ୟୟନ, ସ୍ମୃତି ଶକ୍ତି, ବ୍ୟାପକ ପୁସ୍ତକ ସଂଗ୍ରହ, ବକ୍ତୃତା କୌଶଳ ଇତ୍ୟାଦି ଇତ୍ୟାଦି ସମ୍ପର୍କରେ ଅନେକ କଥା ଜାଣିଛନ୍ତି ।

ଏବେ ଯେତେବେଳେ ପରିଷଦର କାର୍ଯ୍ୟ ନିର୍ବାହିକା ସମିତିରେ ସ୍ଥିର ହେଲା ଯେ, ସ୍ଥାୟୀ ସଭାପତି ଅଧାପକ ବ୍ରହ୍ମାଙ୍କର ଜୟନ୍ତୀ ପାଳନ କରାଯିବ, ତାଙ୍କ ସହିତ ମୋର ଦୀର୍ଘ ପଞ୍ଚଚାଳିଶ ବର୍ଷର ସମ୍ପର୍କ ଦେଖି ମତେ

ପରିଷଦର ବନ୍ଧୁମାନେ ଅନୁରୋଧ କଲେ, ଅଧ୍ୟାପକ ମହାଶୟଙ୍କର ଜୀବନୀଟିଏ ଲେଖିବା ପାଇଁ । ମୋର ବ୍ୟସ୍ତତା, ସମୟର ଅଳ୍ପତା ଏବଂ ପୁସ୍ତକ ପ୍ରକାଶନ ପାଇଁ ପରିଷଦର ସୀମିତ ସମ୍ବଳକୁ ଆଖି ଆଗରେ ରଖି ଏବଂ ବନ୍ଧୁମାନଙ୍କ ଠାରୁ ଅଧ୍ୟାପକଙ୍କ ସଂପର୍କରେ ନାନା କଥା ସଂଗ୍ରହ କରି ଏହି ପୁସ୍ତକଟି ପ୍ରଣୟନ କଲି । ଅଧ୍ୟାପକ ବ୍ରହ୍ମାଙ୍କ ଭକ୍ତ ଜୀବନୀ ମୂଳରେ ଥିବା ତାଙ୍କ ବିବରଣୀ ଏବଂ ତାଙ୍କର ସାହିତ୍ୟିକ ଅବଦାନ ସମ୍ପର୍କରେ ଇଂରାଜୀରେ ପ୍ରକାଶ ପାଇଥିବା ଗୋଟିଏ ପୁସ୍ତିକାର ସାହାଯ୍ୟ ଗ୍ରହଣ କରିଅଛି ।

ମୋର ଧାରଣା, ମୁଁ ଏ ପୁସ୍ତିକାରେ ଅଧ୍ୟାପକଙ୍କ ଜୀବନର ତଥା ସାଧନାର ଅନେକ ଦିଗ ସ୍ପର୍ଶ କରିନାହିଁ । ତଥାପି, ମୋର ଆଶା, ଏହି ପୁସ୍ତିକା ପାଠକଲେ ଆଜି ବ୍ରହ୍ମା କିପରି ଓ କାହିଁକି "ବ୍ରହ୍ମା" ଭାବରେ ସମ୍ମାନିତ ହେଉଛନ୍ତି, ତାହା ଜାଣିବା କଷ୍ଟକର ହେବନାହିଁ ।

ପରିଶେଷରେ ଏହି ପାଣ୍ଡୁଲିପି ପ୍ରସ୍ତୁତିରେ ଅଧ୍ୟାପକ ବ୍ରହ୍ମାଙ୍କର ଶ୍ରୁତିଲିଖନ କାରୀ ଶ୍ରୀ ସୁଧାକର ପ୍ରଧାନ ଏବଂ 'ପୁସ୍ତକ ପ୍ରକାଶନରେ ଶ୍ରୀଯୁକ୍ତ ଶ୍ରୀଧର ଦାଶ ଏବଂ ବ୍ରହ୍ମଗୃହୀ ଶ୍ରୀଯୁକ୍ତ ପ୍ରଶାନ୍ତ କୁମାର ମିଶ୍ରଙ୍କର ଅକୁଣ୍ଠ ସାହାଯ୍ୟପାଇଁ ମୁଁ ସେମାନଙ୍କୁ ମୋର ଶୁଭେଚ୍ଛା ଓ ଧନ୍ୟବାଦ ଅର୍ପଣ କରୁଅଛି ।

[ଇତି]

ଗୋପୀନାଥ ସେନାପତି

ଭୁବନେଶ୍ୱର

ତା ୫।୧।୮୭

## ଉତ୍କଳ ବାଚସ୍ପତି, ବାଗ୍ମୀ-ପ୍ରବର

# ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା

ଓଡ଼ିଶାରେ "ଅଧ୍ୟାପକ ବ୍ରହ୍ମା" ବୋଲିଲେ, କେବଳ "ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା" ବୁଝାଯାଆନ୍ତି । ଗତ ପଞ୍ଚଚାଳିଶ ବର୍ଷଧରି ତାଙ୍କର ବକ୍ତୃତା ପ୍ରବାହ ଲକ୍ଷ ଲକ୍ଷ ଶ୍ରୋତାଙ୍କ ହୃଦୟଭୂମିକୁ ପ୍ଲାବିତ କରି ଆସିଛି । ଏକାଧାରରେ ଅନର୍ଗଳ ବକ୍ତା, ହଜାର ହଜାର ପୃଷ୍ଠାର ପୁସ୍ତକ ଲେଖକ, ବିଶାଳ ସଂସ୍କୃତ ସାହିତ୍ୟର ସୁଦକ୍ଷ ପରିବେଷକ, ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକନିଷ୍ଠ ସେବକ ଓ ସାଧକ, ଭକ୍ତସାହିତ୍ୟର ଅଦ୍ୱିତୀୟ ସମାଲୋଚକ, ଟୀକାକାର ଏବଂ ପରିବେଷକ ତଥା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ସୁଦକ୍ଷ ରସଗ୍ରାହକ ଭାବରେ ସେ ସୁପରିଚିତ । ଓଡ଼ିଆ, ଇଂରାଜୀ ଏବଂ ସଂସ୍କୃତ, ଏହି ତିନୋଟି ଭାଷାରେ ଅନର୍ଗଳ ଭାଷଣ ଦେଇ ସେ ଭାରତର ବକ୍ତାମାନଙ୍କ ମଧ୍ୟରେ ଯେଉଁ ମହନୀୟ ଆସନ ଲାଭ କରିଅଛନ୍ତି, ତାହା କେବଳ ତାଙ୍କର ବ୍ୟକ୍ତିଗତ ଗୌରବ ବର୍ଦ୍ଧନ କରିନାହିଁ । ତହିଁ ସଙ୍ଗେ ସଙ୍ଗେ ଓଡ଼ିଆମାନଙ୍କର ଗୌରବ ମଧ୍ୟ ବୃଦ୍ଧିଲାଭ କରିଛି । କେଉଁ ଶୁଭବେଳାରେ ସେ ଜନ୍ମଗ୍ରହଣ କରିଥିଲେ, କେଜାଣି; ଗତ ପଞ୍ଚଚାଳିଶ ବର୍ଷ ମଧ୍ୟରେ ତାଙ୍କର ମଧୁର କଣ୍ଠ, ଯୌବନ ଆରମ୍ଭର କଣ୍ଠପରି ସୁମଧୁର ରହିଅଛି । ଖ୍ରୀ: ୧୯୭୮ ଆରମ୍ଭରେ ସରକାରୀ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିବାର ଆଠବର୍ଷ ପରେ ମଧ୍ୟ ସେ ଯୁବକଙ୍କପରି କର୍ମଚଞ୍ଚଳ ରହିଅଛନ୍ତି ।

ତାଙ୍କର ପିତାମହ ଏବଂ ପିତା ସଂସ୍କୃତରେ ମହାନ୍ ପଣ୍ଡିତ ଥାଇ ଭାରତର ବିଭିନ୍ନ ଅଞ୍ଚଳରୁ ବିଭିନ୍ନ ଶାସ୍ତ୍ରର ସଂସ୍କୃତ ଗ୍ରନ୍ଥମାନ ସଂଗ୍ରହ କରିଥିଲେ । ସେହି ପାଠାଗାର କେବଳ ପୈତୃକ ସୂତ୍ରରେ

ଅଧ୍ୟାପକ ବ୍ରହ୍ମା ପରିନାହାନ୍ତି । ତାଙ୍କଠାରୁ ବହୁ ବିଷୟର ଶତଶତ ଗ୍ରନ୍ଥର ଅନୁଶୀଳନ କରି, ନିଜର ପାଣ୍ଡିତ୍ୟର ହରିବଳୟ ସମ୍ପ୍ରସାରିତ କରି ଅଛନ୍ତି । ତାଙ୍କ ପିତାଙ୍କର ସଂସ୍କୃତ ଅଷ୍ଟାଦଶ ବିଦ୍ୟାରେ ଗଭୀର ଅବଗାହ ଥିଲା । ସେ ନିଜ ପୁଅକୁ ପଣ୍ଡିତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଭାରତର ଶତାଧିକ ଦେବୀପୀଠରେ ପୁଅର ପାଣ୍ଡିତ୍ୟ ଏବଂ ସୁନାମ ପାଇଁ ଚଣ୍ଡୀ ପାଠ କରିଥିଲେ । ଘୁମୁସର ରାଜ୍ୟର ରାଜଧାନୀ କୁଲାଡ଼ଗଡ଼ର ସୁବିଖ୍ୟାତ "ବାଗ୍‌ଦେବୀ" ମନ୍ଦିରରେ ନିଜ ପୁଅ ପାଇଁ ସେ ଲକ୍ଷ ସଂଖ୍ୟକ ଗାୟତ୍ରୀ ମନ୍ତ୍ର ଜପ କରିଥିଲେ । ଶତ ଶତ ଶିବ ମନ୍ଦିରରେ ପୁଅର ସୁଖ୍ୟାତି ଲାଭ ପାଇଁ ଅଭିଷେକ କରିଥିଲେ । ଏ ସମସ୍ତର ଫଳ ଅଧ୍ୟାପକ ବ୍ରହ୍ମାଙ୍କ ଜୀବନ ବୃକ୍ଷରେ କିପରି ଶୋଭାପାଉଛି, ସେ କଥା ବୁଝାଇ କହିବା ଆବଶ୍ୟକ ମନେ ହୁଏନାହିଁ । ତେଣୁ ଯେଉଁମାନେ ଅଧ୍ୟାପକ ବ୍ରହ୍ମାଙ୍କ ବିମୁଗ୍ଧକର ବାଗ୍ମିତା ଏବଂ ସୁମଧୁର ତଥ୍ୟ ପରିବେଷଣରେ ବିମୁଗ୍ଧ ହୋଇ ତାଙ୍କୁ ବିବିଧ-ଉପାଧିରେ ମଣ୍ଡିତ କରିଅଛନ୍ତି, ସେମାନଙ୍କର ବିଚାରଧାରା ନିଶ୍ଚିତଭାବରେ ଅଭିନନ୍ଦନୀୟ । ପଣ୍ଡିଚେରୀରୁ "ଉତ୍କଳ ବାଚସ୍ପତି", କର୍ଣ୍ଣାଟକରୁ "ପୁରୁଷ ସରସ୍ୱତୀ", ଉତ୍ତର ପ୍ରଦେଶରୁ "ଭାରତର ରାମାୟଣ ପୁରୁଷ", କଲିକତାରୁ "ବାଗ୍ମୀପ୍ରବର", ବିଦ୍ୟାନଗରୀ ବାରାଣସୀରୁ "ବିଦ୍‌ବନ୍-ମାନସ-ମରାଳ", ଓଡ଼ିଶାରୁ "ଉତ୍କଳ ଭାରତୀ", "ସାହିତ୍ୟ ମାର୍ତ୍ତଣ୍ଡ", "ଭକ୍ତସ ହିତ୍ୟ ମନ୍ଥନ-ମନ୍ଦର", "ମେହେର-ସାହିତ୍ୟ ରତ୍ନାକର", "ପର୍ଯ୍ୟଟନ ବିଶାରଦ" ଇତ୍ୟାଦି ଇତ୍ୟାଦି ଉପାଧି ଲାଭ କରି ବ୍ରହ୍ମା ବର୍ତ୍ତମାନ ଜୀବିତ ଥିଲେ ମଧ୍ୟ ବହୁ ଯୁଗ ପୂର୍ବର ଜଣେ ତେଜୋଦୀପ୍ତ ପୁରୁଷରୂପେ ପ୍ରତିଭାତ ହେଉଅଛନ୍ତି ।

ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ, 'ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ' ଏବଂ 'ଓଡ଼ିଶା ଲଳିତ କଳା ଏକାଡ଼େମୀ'ର ବହୁ ବର୍ଷ ଧରି ସେ ଥିଲେ ସଂପାଦକ । ତିନୋଟି ଯାକ ଏକାଡ଼େମୀର ବହୁବିଧ କାର୍ଯ୍ୟକଳାପ ସାଧନ କରି ଓଡ଼ିଶାରେ ସାଂସ୍କୃତିକ ଚେତନାର ପ୍ରସାର ପାଇଁ ସେ ଯେଉଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରି-

ଥିଲେ, ତାହାମଧ୍ଯ ଭୁଲିବାର ନୁହେଁ । ଓଡ଼ିଶା ସରକାରଙ୍କ Chief Tourist Guide ଏବଂ ପର୍ଯ୍ୟଟନ ବିଭାଗର Deputy Director ଭାବରେ ସେ ଯେଉଁ ଜନପ୍ରିୟତା ଅର୍ଜନ କରିଅଛନ୍ତି, ତାହା ଏକ ବେଳକେ ବ୍ୟକ୍ତି ଗୌରବର ଶେଷସୀମାରେ ତାଙ୍କୁ ପହଞ୍ଚାଇ ଦେଇଛି । ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗର Deputy Director, State Liaison Officer ଏବଂ Chief Editor Orissa, Oriental Texts Series ଭାବରେ ମଧ୍ଯ ତାଙ୍କର ଅନେକ ସ୍ଥାୟୀକାମ ଓଡ଼ିଶାର ସାଂସ୍କୃତିକ ଜୀବନରେ ବିସ୍ମୃତ ହେବାର ନୁହେଁ ।

ଅଖିଳ ଭାରତୀୟ ସଭାମାନଙ୍କରେ ଓଡ଼ିଶାର ପ୍ରତିନିଧିତ୍ୱ କରି, ଜନ୍ମଭୂମି ପାଇଁ ସେ ବିପୁଳ ଗୌରବ ଅର୍ଜନ କରିଅଛନ୍ତି । ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଅନେକ ସୁପ୍ରତିଷ୍ଠିତ ମତବାଦକୁ ଦୋହଲାଇ ଦେଇ ସେ ଚମକ ସୃଷ୍ଟି କରିଅଛନ୍ତି ଭଞ୍ଜ ସାହିତ୍ୟର ତଥା ପ୍ରାଚୀନ କାବ୍ୟମାନଙ୍କର ପଦମାନଙ୍କୁ ବିଚିତ୍ରଭାବରେ ବାଖ୍ୟାନ କରି, ଲକ୍ଷ ଲକ୍ଷ ପାଠକ ଓ ଶ୍ରୋତାଙ୍କ ମନରେ କମ୍ପନ ସୃଷ୍ଟି କରିଅଛନ୍ତି । ଓଡ଼ିଆ ଅଧ୍ୟାପକ ଭାବରେ ସେ ଯେଉଁ ଉତ୍କଳବ୍ୟାପିନୀ କୀର୍ତ୍ତି ଅର୍ଜନ କରିଅଛନ୍ତି, ସେ କଥା ଚିନ୍ତାକଲେ ଆଶ୍ଚର୍ଯ୍ୟରେ ଅଭିଭୂତ ହେବାକୁ ପଡ଼େ । କଲେଜରେ ଓଡ଼ିଆ କାବ୍ୟ ପଢ଼ାଇବାବେଳେ ପୁସ୍ତକର ସାହାଯ୍ୟ ନ ନେଇ, କେବଳ ମନ ଓ ମୁଖ ସାହାଯ୍ୟରେ କାବ୍ୟଗୁଡ଼ିକୁ ସେ ଯେପରି ପଢ଼ାଉଥିଲେ, ହୁଏତ ସମଗ୍ର ଭାରତରେ ତାର ପଟାନ୍ତର ନାହିଁ । ହଜାର ହଜାର ଶ୍ଳୋକ ତାଙ୍କର ପିତା ବାଲ୍ୟ ବୟସରେ ତାଙ୍କୁ ମୁଖସ୍ଥ କରାଇଥିଲେ । ଏପରିକି, ସଂସ୍କୃତ ଗଦ୍ୟରେ ରଚିତ ସୁପ୍ରସିଦ୍ଧ କାଦମ୍ବରୀ କାବ୍ୟର ଅର୍ଦ୍ଧାଧିକ ଭାଗ ତାଙ୍କର ବାଲ୍ୟବୟସରେ ସେ ମୁଖସ୍ଥ କରିଦେଇଥିଲେ । ଏବେ ମଧ୍ଯ ସେହି ବାଲ୍ୟସ୍ମୃତିକୁ ଉଦ୍‌ବୁଦ୍ଧ କରି ସେ ଯେଉଁବେଳେ କାଦମ୍ବରୀ କାବ୍ୟର ଗୋଟିଏ ଦୁଇଟି ବାକ୍ୟ ସଭାସମିତିରେ ଉଚ୍ଚାର କରନ୍ତି, ଶ୍ରୋତାମାନଙ୍କ କର୍ଣ୍ଣରେ ବିପୁଳ କମ୍ପନ ସୃଷ୍ଟି ହୁଏ ଏବଂ ବଳେ ବଳେ ସେମାନଙ୍କର କରତାଳ ଧ୍ୱନି ଉଠିପଡ଼ିଥାଏ । ତାଙ୍କର କଣ୍ଠର ଲାଳିତ୍ୟ ସହିତ ସଂସ୍କୃତ ଛନ୍ଦ ଏବଂ ଓଡ଼ିଆ ଛନ୍ଦ ଗାନ

କରିବାର କେଉଁ କୌଶଳ, ତାହା ମଧ୍ୟ ଅନେକଙ୍କର ଅନୁକରଣୀୟ ହୋଇ-ଥାଏ । କବିସୂର୍ଯ୍ୟ ବଳଦେବଙ୍କର କେତେକ ଗୀତକୁ ଘଣ୍ଟବାଦ୍ୟରେ, ମୃଦଙ୍ଗ ବାଦ୍ୟରେ ଏବଂ ଦାସକାଠିଆ ବାଦ୍ୟରେ ଗାନକରି ସେ ଯେଉଁ ରସ ସୃଷ୍ଟି କରୁଅଛନ୍ତି, ତାହାର ମଧ୍ୟ ପଟାନ୍ତର ନାହିଁ କହିଲେ ଚଳେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଏବଂ ଓଡ଼ିଆ ଭାଷା ଉପରେ ସେ ଜଣେ ବିଶେଷଜ୍ଞ ବା Authority ଭାବରେ ସୁନାମ ଅର୍ଜନ କରିଛନ୍ତି ।

ଅଧ୍ୟାପକ ବ୍ରହ୍ମା ନିଜେ କେବଳ ଗୁଣବନ୍ତ ନୁହନ୍ତି, ଗୁଣଜ୍ଞ ମଧ୍ୟ । ବିଭିନ୍ନ କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିବା ନିଜର ଛାତ୍ରମାନଙ୍କୁ ନେଇ ସେ ଗର୍ବ ଅନୁଭବ କରନ୍ତି । ସେ ଯେତେବେଳେ ୧୯୪୧ ଖ୍ରୀଷ୍ଟାବ୍ଦରେ ବାଣପୁର ହାଇସ୍କୁଲରେ ଶିକ୍ଷକ ଜୀବନ ଆରମ୍ଭ କଲେ, ସେତେବେଳେ ଆଜିର ସୁପ୍ରିମ୍ କୋର୍ଟର ବିଚାରପତି ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର ସେଠାର ଦଶମ ଶ୍ରେଣୀର ଛାତ୍ର ଥିଲେ । ସେ ସମୟରୁ ଆରମ୍ଭକରି ୧୯୬୮ ପର୍ଯ୍ୟନ୍ତ ସେ ବହୁ ପ୍ରତିଭାଶାଳୀ ଛାତ୍ରଛାତ୍ରୀଙ୍କୁ ପଢ଼ାଇବାର ସୁଯୋଗ ପାଇଛନ୍ତି, ଯେଉଁମାନଙ୍କର ସାଧନା ଓ ସିଦ୍ଧି ଓଡ଼ିଆ ସଂସ୍କୃତି ପାଇଁ ମହନୀୟ ହୋଇ-ଉଠିଛି । ଅଧ୍ୟାପକ ବ୍ରହ୍ମାଙ୍କ ଭାଷାରେ—"ଶ୍ରୀମତୀ ନନ୍ଦିନୀ ଶତପଥୀ, ଶ୍ରୀ ଦେବେନ୍ଦ୍ର ଶତପଥୀ, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ, ଅଧ୍ୟାପକ ପଠାଣି ପଟ୍ଟନାୟକ, ଶ୍ରୀଯୁକ୍ତ ସଚ୍ଚିଦା-ନନ୍ଦ କର ('ମାତୃଭୂମି'ର ସଂପାଦକ), ଡକ୍ଟର ଖଗେଶ୍ୱର ମହାପାତ୍ର, ଡକ୍ଟର କୃଷ୍ଣଚରଣ ସାହୁ, ଡକ୍ଟର ଶ୍ରୀନିବାସ ମିଶ୍ର, ଡକ୍ଟର ଗଙ୍ଗାଧର ବଳ, ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଡକ୍ଟର ଦେବେନ୍ଦ୍ର ମହାନ୍ତି, ଅଧ୍ୟାପକ ହୃଦାନନ୍ଦ ରାୟ, ଅଧ୍ୟାପକ ରଜତ କୁମାର କର, ଶ୍ରୀ ରମାକାନ୍ତ ରଥ I.A.S., ଶ୍ରୀ ସୀତାକାନ୍ତ ମହାପାତ୍ର I.A.S., ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ, ବାରିଷ୍ଟର ରଣଜିତ୍ ମହାନ୍ତି, ଶ୍ରୀମତୀ ବୀଣା ପତି ପ୍ରମୁଖ ମୋର ଅଗଣିତ ଛାତ୍ରଛାତ୍ରୀ ମୋ ମାନସପଟରେ ଉଦ୍‌ଭାସିତ ହୋଇ ମତେ ଧନ୍ୟ-ଆନନ୍ଦ ରସରେ ପରିପ୍ଳୁତ କରୁଅଛନ୍ତି ।

ଅଧ୍ୟାପକ ବ୍ରହ୍ମା ଅନେକ ସମୟରେ କହନ୍ତି, ''ଭାରତବର୍ଷର ନୀତି ଅନୁସାରେ ମନୁଷ୍ୟ ସବୁବେଳେ ନିଜେ ଜୟଯୁକ୍ତ ହେବାକୁ ଚାହେଁ । କିନ୍ତୁ ନିଜର ପୁତ୍ରଠାରୁ ଏବଂ ଶିଷ୍ୟଠାରୁ ଗୁଣରେ ଓ ଜ୍ଞାନରେ ପରାଜିତ ହେବାକୁ ଇଚ୍ଛା କରିବା ଉଚିତ୍ । ମୁଁ ସେହି କଥା ସବୁବେଳେ ଅନୁଭବ କରେ ଏବଂ ମୋର ଅଗଣିତ ଛାତ୍ରଙ୍କର ସାଧନା ଗୌରବରେ ବିମୁଗ୍ଧ ହୋଇ ନିଜକୁ ଭାଗ୍ୟବାନ୍ ମନେ କରେ । ଓଡ଼ିଶାର ବହୁ ସଂଖ୍ୟକ ମହାବିଦ୍ୟାଳୟର ଅଧ୍ୟକ୍ଷ ମୋର ଛାତ୍ର, ଅନେକ ବିଚାରପତି ମୋର ଛାତ୍ର, ଅନେକ ଯଶସ୍ୱୀ ଆଇନଜୀବୀ ମୋର ଛାତ୍ର, ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗର ଅନେକ ପ୍ରଫେସର ମୋର ଛାତ୍ର, ପ୍ରଶାସନ କ୍ଷେତ୍ରରେ ବହୁ ଉଚ୍ଚ ଅଫିସର ମୋର ଛାତ୍ର । ପୁଣି ସଙ୍ଗୀତ, ସଂସ୍କୃତି, ସାହିତ୍ୟ ଓ ଜନସେବା କ୍ଷେତ୍ରରେ ବହୁଖ୍ୟାତନାମା ବ୍ୟକ୍ତି ମୋର ଛାତ୍ର'' ବୋଲି କହିଲାବେଳେ ଅଧ୍ୟାପକ ବ୍ରହ୍ମା ଭାବବିହ୍ୱଳ ହୋଇ ଉଠିଆନ୍ତି ।

୧୯୭୮ ଆରମ୍ଭରେ, ଅବସର ଗ୍ରହଣ କରିବାପରେ, ଅଧ୍ୟାପକ ବ୍ରହ୍ମାଙ୍କ କର୍ମପରିସର ସଙ୍କୁଚିତ ହୋଇନାହିଁ । ବରଂ ବହୁଗୁଣରେ ବଢିଯାଇଛି । ୧୯୭୮ ପରେ ସେ ହେଲେ ବିଶ୍ୱ ହିନ୍ଦୁପରିଷଦ— ଓଡ଼ିଶା ଶାଖାର ଉପସଭାପତି, ବିଶ୍ୱ ସଂସ୍କୃତ ପ୍ରତିଷ୍ଠାନମ୍—ଓଡ଼ିଶା ଶାଖାର ସମ୍ପାଦକ ଏବଂ ବର୍ତ୍ତମାନ ହୋଇଛନ୍ତି ତାହିଁର ସଭାପତି; 'ସ୍ୱଧର୍ମ ମହାସଭା''ର ସଭାପତି, ନିଖିଳ ଉତ୍କଳ ପାଲିଗାୟକ ସମ୍ମିଳନୀର ସଭାପତି, ବହୁ ଅନୁଷ୍ଠାନର ସେ ଅଛନ୍ତି ପରାମର୍ଶଦାତା ଏବଂ ଅନେକ ପତ୍ରିକାର ମଧ୍ୟ ସେ ଅଛନ୍ତି ପରାମର୍ଶଦାତା । ଚଳିତ ବର୍ଷ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଶୁଭନିର୍ଦ୍ଦେଶରେ, ମହାକବି ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ କାବ୍ୟର ଦ୍ୱିତୀୟ ଅର୍ଦ୍ଧ ଉପରେ ପ୍ରାଞ୍ଜଳ ଟୀକା ଲେଖିବା ପାଇଁ ପୁଣିଥରେ ନିଯୁକ୍ତ ହୋଇଛନ୍ତି । ଏଠାରେ ସ୍ମରଣୀୟ ଯେ, ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲାବେଳେ ଅଧ୍ୟାପକ ବ୍ରହ୍ମା ବୈଦେହୀଶ ବିଳାସ ଉପରେ ଟୀକା ଲେଖିବା ପାଇଁ ନିଯୁକ୍ତ ହୋଇଥିଲେ ଏବଂ ଏହି କାବ୍ୟର ପ୍ରଥମ ଅର୍ଦ୍ଧର ଟୀକା ଏକ ବିଶାଳକାୟ ଗ୍ରନ୍ଥରୂପରେ ପ୍ରକାଶିତ ହୋଇଅଛି । ଆମେରିକାର କାଲିଫର୍ଣ୍ଣିଆ

ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା ବିଦୁଷୀ Dr. Joanna Williams ଅଧ୍ୟାପକ ବ୍ରହ୍ମାଙ୍କ ବୈଦେହୀଶ ବିଳାସର ଟୀକା—ଅବଲମ୍ବନରେ, ଇଂରାଜୀ ଗଦ୍ୟରେ ବୈଦେହୀଶ ବିଳାସର ମୁକ୍ତ ଅନୁବାଦ (Free translation) କରି ସାରିଛନ୍ତି । ଏବେ ଅଧ୍ୟାପକ ବ୍ରହ୍ମା ବୈଦେହୀଶ ବିଳାସର ଦ୍ୱିତୀୟ ଅର୍ଦ୍ଧର ଟୀକା ଶେଷ କରିବା ପରେ ବିଶ୍ୱ ଦରବାରରେ ସମଗ୍ର କାବ୍ୟଟି ଉପସ୍ଥାପିତ ହେବାର ମାର୍ଗ ପରିଷ୍କୃତ ହୋଇଯିବ । ଏହାଛଡ଼ା, ଅଧ୍ୟାପକ ବ୍ରହ୍ମା ଇଂରାଜୀରେ ପାଞ୍ଚଗୋଟି ଗ୍ରନ୍ଥ ବର୍ତ୍ତମାନ ଲେଖୁଛନ୍ତି ଗୋଟିଏ ହେଉଛି 'ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି' ଉପରେ, ଦ୍ୱିତୀୟଟି ହେଉଛି, 'ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ' ଉପରେ, ତୃତୀୟଟି ହେଉଛି ଓଡ଼ିଶାର ସାଂସ୍କୃତିକ ଜୀବନ' ଉପରେ, ଚତୁର୍ଥଟି ହେଉଛି 'ଓଡ଼ିଶାର ପର୍ଯ୍ୟଟନ ପୀଠ'-ମାନଙ୍କ ଉପରେ ଏବଂ ପଞ୍ଚମଟି ହେଉଛି 'ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅବଦାନ' ଉପରେ । ଏ ମଧ୍ୟରୁ କେତୋଟି ପୁସ୍ତକ କେତେବର୍ଷ ଆଗରୁ ଆରମ୍ଭ ହୋଇଥିଲେ ମଧ୍ୟ ବିଶେଷ ଅଗ୍ରଗତି କରିପାରି ନ ଥିଲା ।

ଅଧ୍ୟାପକ ବ୍ରହ୍ମା ତାଙ୍କର ବାସଭବନରେ ଓଡ଼ିଆ ସାହିତ୍ୟର ଯେଉଁ ପାଠାଗାର ପ୍ରତିଷ୍ଠା କରିଛନ୍ତି, ସମଗ୍ର ଜାତିପାଇଁ ତାହା ହେଉଛି ଏକ ମହାମୂଲ୍ୟ ସମ୍ପଦ । ଗତ ଦେଢ଼ଶହ ବର୍ଷ ମଧ୍ୟରେ ପ୍ରକାଶିତ ଅନେକ ପୁସ୍ତକ ସେ ଅତିଯତ୍ନରେ ସଂଗ୍ରହ କରି ରଖିଛନ୍ତି । ସଂସ୍କୃତ ସାହିତ୍ୟର ଆଧାର ଉପରେ ଓଡ଼ିଆ ଭାଷାରେ ଯେଉଁସବୁ ପୁସ୍ତକ ପ୍ରକାଶିତ ହୋଇଅଛି, ସେସବୁ ଅଧ୍ୟାପକ ବ୍ରହ୍ମାଙ୍କ ଘରୋଇ ପାଠାଗାରରେ ଦେଖିବାକୁ ମିଳିବ । ଉପେନ୍ଦ୍ର ଭଞ୍ଜଙ୍କ ଉପରେ, ଶ୍ରୀଜଗନ୍ନାଥଙ୍କ ଉପରେ ଏବଂ ଭାରତୀୟ ଶିକ୍ଷା, ସଭ୍ୟତା, ସାହିତ୍ୟ ଓ ସଂସ୍କୃତି ଉପରେ ସେ ଯେଉଁସବୁ ପୁସ୍ତକମାନ ସଂଗ୍ରହ କରି ରଖିଛନ୍ତି, ତାହା ଓଡ଼ିଶାରେ ଅନ୍ୟତ୍ର ଦେଖିବାକୁ ହୁଏତ ମିଳିବ ନାହିଁ । ଅଥଚ, ନିଜ ପେଟରୁ କାଟି ଏସବୁ ସେ କରିଛନ୍ତି । ତାଙ୍କର ସଂସ୍କୃତ ଉଚ୍ଚାରଣ ସମଗ୍ର ଭାରତରେ ଅଭିନନ୍ଦିତ । ଦୁଇଟି ବ, ଶ, ଷ, ସ, କ୍ଷ, ଳ, ଋ ଇତ୍ୟାଦି ବର୍ଣ୍ଣମାନଙ୍କର ଉଚ୍ଚାରଣ ପଦ୍ଧତି ପିତାଙ୍କଠାରୁ ସେ ଶିକ୍ଷା କରିଥିଲେ । ତାଙ୍କର ଗୀତାପାଠ ଓ ଚଣ୍ଡୀପାଠର ଉଚ୍ଚାରଣଗତ ବିଶେଷତ୍ୱ ସହଜରେ ବାରିହୋଇ–

ପଡ଼େ । ଜଗନ୍ନାଥଙ୍କଠାରେ ତାଙ୍କର ଭକ୍ତି ଅସାଧାରଣ । ଜଗନ୍ନାଥଙ୍କ କଥା ବନ୍ଧୁମେଳରେ କହୁଥିଲାବେଳେ ଏବଂ ସଭାସମିତିରେ କହୁଥିଲାବେଳେ ଶିଶୁଙ୍କ-ଭଳି ସେ ବିଳାପ କରିଥାଆନ୍ତି । ବଡ଼ ବଡ଼ ସଭାସମିତିରେ ଜଗନ୍ନାଥଙ୍କ କୃପା କିପରି ସେ ପାଇ ଆସିଛନ୍ତି; କହୁଥିଲାବେଳେ କାନ୍ଦି ପକାନ୍ତି । ସେ ଜଣେ କ୍ଷଣଜନ୍ମା ପୁରୁଷ । ଅବସର ଗ୍ରହଣଠାରୁ ଭୁବନେଶ୍ୱରସ୍ଥିତ ବାସଭବନରେ ସେ ଯେଉଁ P. G. Coaching Centre ପ୍ରତିଷ୍ଠା କରିଛନ୍ତି, ତାହା ମଧ୍ୟ ତାଙ୍କର ବିରାଟ ବ୍ୟକ୍ତିତ୍ୱର ପରିଚାୟକ ।

# ସଂକ୍ଷିପ୍ତ ଜୀବନୀ

## ବଂଶ ଓ ଜନ୍ମସ୍ଥାନ—

ଗଞ୍ଜାମର ଶ୍ରେଷ୍ଠ ନଗର ବ୍ରହ୍ମପୁରରୁ ଆସିକା ବାଟଦେଇ ଭଞ୍ଜନଗରକୁ ଯେଉଁ ରାଜମାର୍ଗ ଯାଇଛି, ସେହି ମାର୍ଗରେ ୪୦ ମାଇଲ ବା ୬୪ କିଲୋ-ମିଟର ଗଲେ ଷଣ୍ଢିସ୍ତୁବରପୁର ନାମକ ବ୍ରାହ୍ମଣ ଗ୍ରାମ (ଶାସନ) ପଡ଼େ । ଏହି ଗ୍ରାମର ଏକ ମାଇଲ ପଶ୍ଚିମରେ "ପ୍ରତାପ ଲକ୍ଷ୍ମଣପୁର" ନାମକ ବ୍ରାହ୍ମଣ ଗ୍ରାମ (ଶାସନ) ରହିଛି । ଅଧ୍ୟାପକ ବ୍ରହ୍ମାଙ୍କ ପିତା ସ୍ୱର୍ଗତ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଏହି ଗ୍ରାମର ଅଧିବାସୀ । ଘୁମୁସରର ଜଣେ ରାଜା ଅପୁତ୍ରିକ ଥିଲେ । "ପୁତ୍ରେଷ୍ଟି ଯଜ୍ଞ" କରାଇ ପୁତ୍ରବାନ୍ ହେବା ଆଶାରେ ପୁରୀ-ଚନ୍ଦନପୁର ନିକଟବର୍ତ୍ତୀ ବୀରନରସିଂହପୁର ଶାସନରୁ ବ୍ରହ୍ମାଙ୍କର ଜଣେ ପୂର୍ବପୁରୁଷଙ୍କୁ ଘୁମୁସର ରାଜା ଡ଼କାଇ ଆଣିଲେ । ଘୁମୁସରର ରାଜଧାନୀ ହେଉଛି "କୁଲାଡ଼" । ଗଞ୍ଜାମର ଅନ୍ୟତମ ପ୍ରସିଦ୍ଧ ସହର "ଭଞ୍ଜନଗର"ଠାରୁ କୁଲାଡଗଡ଼ର ଦୂରତା ହେଉଛି ମାତ୍ର ଆଠ କିଲୋମିଟର । ସେଠାରେ ଯେଉଁ ବାଗ୍‌ଦେବୀ" ମନ୍ଦିର ଅଛି, ତାହା ଏକ ସମୟରେ ବାରାଣସୀ, ନେପାଳ,,

ଓ କାଶ୍ମୀରର ପଣ୍ଡିତମାନଙ୍କୁ ଆକର୍ଷଣ କରି ଆଣୁଥିଲା । ଗଡ଼ର ଏକସୀମାକୁ ସ୍ପର୍ଶକରି ବଡ଼ ନଦୀ ବହିଯାଇଛି । ନଦୀର ଅପରପାର୍ଶ୍ୱରେ ପାଞ୍ଚୋଟି ବ୍ରାହ୍ମଣ ଶାସନ ଅବସ୍ଥିତ । ସେଥିରୁ ଗୋଟିଏ ହେଉଛି, ''ଗୋପୀନାଥପୁର'' ଶାସନ । ଘୁମୁସରର ରାଜା ଯଜ୍ଞ କରାଇ ପୁତ୍ରଲାଭ କରିବାପରେ ବ୍ରହ୍ମାଙ୍କ ପୂର୍ବପୁରୁଷଙ୍କୁ ଏହି 'ଗୋପିନାଥପୁର' ଗ୍ରାମରେ ରଖାଇ ଥିଲେ । ଅନେକ ବର୍ଷପରେ, ଏହି ବ୍ରହ୍ମା ବଂଶର ଗୋଟିଏ ଭାଗ କେତେକ କାରଣରୁ 'ପ୍ରତାପ ଲକ୍ଷ୍ମଣପୁର'କୁ ଚାଲିଯାଇଥିଲେ । ତେଣୁ ଅଧ୍ୟାପକ ବ୍ରହ୍ମାଙ୍କ ଗ୍ରାମ କହିଲେ ଏହି ''ପ୍ରତାପ ଲକ୍ଷ୍ମଣପୁର''କୁ ବୁଝାଯାଏ । ସ୍ଥାନୀୟ ଲୋକେ କିନ୍ତୁ ଏହାକୁ 'ପରଶୁଲକ୍ଷ୍ମୀ' ବୋଲି କହନ୍ତି । ଏହି ଗ୍ରାମର ପଶ୍ଚିମକୁ ଜଙ୍ଗଲ ମଧ୍ୟରେ 'ବୁଢ଼ାକେନ୍ଦୁ ଦେବୀ ପୀଠ ରହିଅଛି । ବଣଭୋଜି (Picnic) ପାଇଁ ଏହା ଗୋଟିଏ ସୁରମ୍ୟ ସ୍ଥାନ ।

କିନ୍ତୁ ଅଧ୍ୟାପକ ବ୍ରହ୍ମା ଏହି ଗ୍ରାମରେ ଜନ୍ମ ହୋଇ ନଥିଲେ । ସେ ଜନ୍ମ ହୋଇଥିଲେ ମାତୁଳାଳୟରେ 'ଷଡ଼ଙ୍ଗୀ—ପଲ୍ଲୀ' ଗ୍ରାମରେ । ଛତ୍ରପୁର ବରପୁରଠାରୁ ରାଜ ମାର୍ଗରେ ଭଞ୍ଜ ନଗର ଆଡ଼କୁ ପ୍ରାୟ ପାଞ୍ଚ କିଲୋମିଟର ଗଲେ, ବାମ ଭାଗରେ ଏହି ଗ୍ରାମ ଦେଖିବାକୁ ମିଳେ । ଅଧ୍ୟାପକ ବ୍ରହ୍ମା ତାଙ୍କର ମାତାମହ (ଅଜା) ଗଦାଧର ମିଶ୍ରଙ୍କ ଘରେ ଜନ୍ମ ହୋଇଥିଲେ ।

ଅଧ୍ୟାପକ ବ୍ରହ୍ମାଙ୍କର ଜନ୍ମ ଓ ନାମକରଣ ସଂପର୍କରେ ଗୋଟିଏ ଘଟଣା ତାଙ୍କର ପିତାଙ୍କର ଅନେକ ବନ୍ଧୁଙ୍କ ଠାରୁ ଶୁଣିବାକୁ ମିଳେ । ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କର ଧର୍ମପ୍ରାଣା ପତ୍ନୀ ଥିଲେ ସାବିତ୍ରୀ ଦେବୀ । ଭାରତୀୟ ସାହିତ୍ୟରେ ବ୍ରହ୍ମା ଓ ସାବିତ୍ରୀଙ୍କର ମିଳନପରି, ଚନ୍ଦ୍ର ବ୍ରହ୍ମା ଓ ସାବିତ୍ରୀଙ୍କର ମିଳନ ହୋଇଥିଲା । କିନ୍ତୁ ବିବାହର ଅନେକ ବର୍ଷ ପର୍ଯ୍ୟନ୍ତ ସନ୍ତାନ ହେଲା ନାହିଁ । ସେ ବିଦ୍ୟାନଗରୀ ବାରାଣସୀରେ ସଂସ୍କୃତ ପଢିଲାବେଳେ ଜାଣି- ପାରିଥିଲେ ଯେ, 'ବିନ୍ଧ୍ୟ ବାସିନୀ' ଚଣ୍ଡୀମନ୍ଦିରରେ ଚଣ୍ଡୀପାଠ କଲେ କାମନା ପୂର୍ଣ୍ଣ ହୁଏ । ତେଣୁ ଗୋଟିଏ ପଣ୍ଡିତ ପୁତ୍ର ପାଇବା ପାଇଁ ସେ ପ୍ରତାପ

ଲକ୍ଷଣପୁରରୁ ମଧ୍ୟ ଖରଡ଼ରେ ଥିବା କନ୍ୟାବାସିନୀ ମନ୍ଦିରକୁ ଯାଇ, ପୁତ୍ର କାମନାରେ ଚଣ୍ଡୀପାଠ କରିଥିଲେ । ଗୌରୀଦେବୀଙ୍କୁ ଗୋଟିଏ 'କୁମାର' ଦେବାପାଇଁ ବିକଳ କଣ୍ଠରେ ପ୍ରାର୍ଥନା କରିଥିଲେ । କୁମର ଗୋଟିଏ ମାଗିବାର ହୁଏତ ଲକ୍ଷ୍ୟ ଥିଲା ଏହିଯେ, କୁମାର ଅର୍ଥାତ୍ କାର୍ତ୍ତିକେୟ ଯେପରି ଦେବତାମାନଙ୍କର ସେନାପତି, ଠିକ୍ ସେହିପରି ତାଙ୍କର ପୁଅଟିଏ ହେଲେ, ଦେବଭାଷା ପଢ଼ୁଥିବା ପଣ୍ଡିତମାନଙ୍କର ପକ୍ଷ ଗ୍ରହଣ କରି ସେ ଯୁଦ୍ଧ କରିବ, ଯେଉଁ ପଣ୍ଡିତମାନେକି ବିଦେଶୀ ଗୋରାଶାସନ କାଳରେ ଗୌରବପୂର୍ଣ୍ଣ ସ୍ଥାନ ପାଇପାରୁନଥିଲେ । କିଛିଦିନ ପରେ ଯେତେବେଳେ ପୁଅଟିଏ ଜନ୍ମହେଲା, ତାଙ୍କୁ ନାମଦେଲେ "ଗୌରୀକୁମାର" । କାରଣ, "ଗୌରୀ"ଙ୍କ କୃପାରୁ "କୁମାର"ଟିଏ ସେ ପାଇପାରିଛନ୍ତି ।

## ଜନ୍ମ ସମୟ–ବାଲ୍ୟଶିକ୍ଷା—

ପ୍ରଥମ ତିନିବର୍ଷ ପିଲାଟିକୁ ଯତ୍ନରେ ପାଳିବାପରେ, ପିତାଙ୍କୁ ମୁହେଁ ମୁହେଁ ସଂସ୍କୃତ ଶିଖାଇବାକୁ ଲାଗିଲେ । ଏହା ୧୯୨୦ ଆରମ୍ଭର ଘଟଣା । ମାଟ୍ରିକ୍ ସାର୍ଟିଫିକେଟ୍ ଅନୁସାରେ ଶିଶୁଟି ଜନ୍ମ ହୋଇଥିଲା ୧୯୨୦, ଫେବୃଆରୀ ୨୦ ତାରିଖରେ । ଛତିଶିଆ ବିରପୁରଠାରେ ଥିବା ପ୍ରାଥମିକ ବିଦ୍ୟାଳୟରେ ଦୁଇବର୍ଷ ପଢ଼ିବାପରେ ପଣ୍ଡିତ ବ୍ରହ୍ମା ସେତେବେଳର ଗଞ୍ଜାମଜିଲ୍ଲାରେ ଥିବା ଟିକାଲି-ହାଇସ୍କୁଲର ସଂସ୍କୃତ ପଣ୍ଡିତ ଅବସ୍ଥାପିତ ହେଲେ । ୧୯୨୮ରେ ଏହି ଶିଶୁ ବ୍ରହ୍ମା Tekkali ହାଇସ୍କୁଲର ଚତୁର୍ଥ ଶ୍ରେଣୀରେ ଭର୍ତ୍ତିହେଲେ । ଏହି ସହରଟି ବର୍ତ୍ତମାନ ଆନ୍ଧ୍ରପ୍ରଦେଶକୁ ଚାଲିଯାଇଛି । ପଣ୍ଡିତ ବ୍ରହ୍ମା ସକାଳେ, ସନ୍ଧ୍ୟାରେ ଏବଂ ରାତିରେ ଶିଶୁ ବ୍ରହ୍ମାଙ୍କୁ ମୁହେଁ ମୁହେଁ ସଂସ୍କୃତ କାବ୍ୟ କବିତା ଘୋଷାଇବାରେ ଲାଗିଥାନ୍ତି । ପ୍ରଖର ସ୍ମୃତିଶକ୍ତି ଥିବାରୁ ପିତାଯାହା ପଢ଼ାନ୍ତି, ତାହା ସେ ମନେରଖିଦିଅନ୍ତି । ସେଠାରେ ପ୍ରାୟ ଦେଢ଼ବର୍ଷ ପଢ଼ିବା ଭିତରେ ଶିଶୁ ବ୍ରହ୍ମା ଇଂରାଜୀକୁ ପ୍ରଥମ ଭାଷା ରୂପେ ଏବଂ ତେଲୁଗୁ ଭାଷାକୁ ଦ୍ୱିତୀୟ ଭାଷାରୂପେ ପଢ଼ିଥିଲେ । ସେହି କାରଣରୁ ଏବେ ମଧ୍ୟ ସେ ସାଧାରଣ ଭାବରେ ତେଲୁଗୁଭାଷାରେ କଥାବାର୍ତ୍ତା କରିପାରନ୍ତି ।

ତା'ପରେ ପଣ୍ଡିତ ବ୍ରହ୍ମାଙ୍କର ବଦଳି ହେଲା ଆସିକାସ୍ଥିତ ହାଇସ୍କୁଲକୁ । ଅଧ୍ୟାପକ ବ୍ରହ୍ମା କହନ୍ତି—"ଏବେ ମଧ୍ୟ ସମଗ୍ର ଓଡ଼ିଶାରେ ଦୋତାଲାର ଗୃହପଛେ ପ୍ରଶସ୍ତ ବାରଣ୍ଡା ଥିବା ସୁନ୍ଦର ବଂଗଳାଟିଏ ନାହିଁ କହିଲେ ଚଳେ । ଏ ଦୃଷ୍ଟିରୁ ଆସିକା ହାଇସ୍କୁଲର କୋଠା ଗଞ୍ଜାମରେ ଅଦ୍ୱିତୀୟ ଥିଲା । କାରଣ ମିଂଚନ ନାମକ ଜଣେ ସାହେବଙ୍କର ବାସଭବନପାଇଁ ବହୁଧନ ବ୍ୟୟରେ ଏ କୋଠା ନିର୍ମିତ ହୋଇଥିଲା । କ୍ଲାସରେ ବସି ପଢ଼ିଲାବେଳେ ଗୃହଦଗର ଚନ୍ଦ୍ରକାନ୍ତରେ ଛାତ୍ରମାନେ ନିଜକୁନିଜକୁ ଦେଖିପାରୁଥିଲେ ।" ପଣ୍ଡିତ ବ୍ରହ୍ମା ଆସିକାର ଖମ୍ବେଶ୍ୱରୀ ପାଟଣାରେ ରହୁଥିଲେ । ଘରର ବାଡ଼ିପଛେ ପୁଣ୍ୟସଲିଳା ଋଷିକୁଲ୍ୟା ନଦୀ । ୧୯୩୬ ରେ ଅଧ୍ୟାପକ ବ୍ରହ୍ମା ଏହି ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରିଥିଲେ । ଦୀର୍ଘ ଛଅବର୍ଷ କାଳ ପଣ୍ଡିତ ରାତି ଚାରିଟାରୁ ପୁଅକୁ ଉଠାଇ, ମୁହେଁ ମୁହେଁ ବିଭିନ୍ନ ଶାସ୍ତ୍ର ପଢ଼ାନ୍ତି, ଯଦିଓ ପୁଅ ତହିଁରୁ କିଛି ବୁଝନ୍ତି ନାହିଁ । ସନ୍ଧ୍ୟାବେଳେ ସ୍କୁଲରୁ ଫେରିବା-ପରେ ଘଣ୍ଟାଏକାଳ ସେହିପରି ଘୋଷାନ୍ତି । ୭ ଟାରୁ ୯ଟା ପର୍ଯ୍ୟନ୍ତ ସେ ଶିବପୂଜା କରିବାବେଳେ ପୁଅତାଙ୍କର ସ୍କୁଲପାଠ୍ୟ ପଢ଼ନ୍ତି । ପୁଣି, ଖାଇସାରିବାପରେ ଦୁଇତିନିଘଣ୍ଟାଧରି ସଂସ୍କୃତ ପଢ଼ାନ୍ତି । ଏହାଫଳରେ ପାଣିନିଙ୍କ ଅଷ୍ଟାଧ୍ୟାୟୀ, ହିତୋପଦେଶ, ବିଖ୍ୟାତ ଅଭିଧାନ ଅମରକୋଷ, କାଳିଦାସଙ୍କର କୁମାର ସମ୍ଭବ, ରଘୁବଂଶ ଓ ମେଘଦୂତ, ମାଘଙ୍କ ଶିଶୁପାଳବଧ, ଭାରବିଙ୍କର କିରାତା ର୍ଜୁନୀୟ, ଶ୍ରୀହର୍ଷଙ୍କର ନୈଷଧକାବ୍ୟ, ବାଣଭଟ୍ଟଙ୍କ କାଦମ୍ବରୀ, ଦଣ୍ଡିଙ୍କ ଦଶକୁମାର ଚରିତ, ବିଦ୍ୟାନାଥଙ୍କ ଅଲଙ୍କାର ଗ୍ରନ୍ଥ ପ୍ରତାପରୁଦ୍ରୀୟ, ଭଟ୍ଟିକାବ୍ୟ ଭଗବଦ୍‌ଗୀତା, ପାଣ୍ଡବଗୀତା, ରାମଗୀତା, ଅଭିଜ୍ଞାନ ଶାକୁନ୍ତଳ ନାଟକ, କୃଷ୍ଣମିଶ୍ରଙ୍କ ପ୍ରବୋଧ ଚନ୍ଦ୍ରୋଦୟ ନାଟକ, ମୁରାରି ମିଶ୍ରଙ୍କ ଅନର୍ଘ ରାଘବ ନାଟକ ବେଣୀ ସଂହାର ନାଟକ, ବିଦଗ୍ଧ ମାଧବ ନାଟକ, କୁନ୍ଦମାଳା ନାଟକ ସପ୍ତଶତୀ ଚଣ୍ଡୀ, ଲଳିତା ସହସ୍ର ନାମ, ଶଙ୍କର ଗ୍ରନ୍ଥାବଳୀ, ସାହିତ୍ୟ ଦର୍ପଣ, ଚିନ୍ତାମଣି ଦର୍ପଣ, ଗୀତ ଗୋବିନ୍ଦ, କୃଷ୍ଣ କର୍ଣ୍ଣାମୃତ, ସଂସ୍କୃତ ରାମାୟଣ ଓ ସଂସ୍କୃତ ଭାଗବତ ଇତ୍ୟାଦିରୁ ଶତ ଶତ ଶ୍ଳୋକ ବା ଗଦ୍ୟାଂଶ ଅବଲୀଳାକ୍ରମେ ମୁଖସ୍ଥ ହୋଇଯାଇଥିଲା । ଗୋଟିଏ ଗୋଟିଏ ବିଷୟରେ ବିଭିନ୍ନ କବି କିପରି

ବର୍ଣ୍ଣନା କରିଛନ୍ତି, ସେସବୁ କଥା ନିଜେ ଶ୍ଳୋକ ଆବୃତ୍ତିକରି ପଣ୍ଡିତ ବ୍ରହ୍ମା ତାଙ୍କର ନିଜର ପ୍ରିୟପୁତ୍ରଙ୍କୁ ବୁଝାଇ ଦେଉଥିଲେ । ୧୯୪୧ ଠାରୁ ଆଜି ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଲୋକଙ୍କୁ ଘଣ୍ଟା ଘଣ୍ଟା ବକ୍ତୃତାଦେଇ ଅଧ୍ୟାପକ ବ୍ରହ୍ମାସେ ମନ୍ତ୍ରମୁଗ୍ଧ କରି ରଖିପାରୁଛନ୍ତି, ଇଚ୍ଛାକଲାମାତ୍ରେ ଗୋଟିଏ ବିଷୟରେ ଗଣି ଗଣି ଶ୍ଳୋକ ଉଦ୍ଧାର କରିପାରୁଛନ୍ତି, ତାହାର ଭିତ୍ତିପତନ ହୋଇଥିଲା ୧୯୨୮ ଠାରୁ ୧୯୩୬ ଖ୍ରୀଷ୍ଟାବ୍ଦ ମଧ୍ୟରେ । ଏହି ଆଠ ନଅବର୍ଷକାଳ ପଣ୍ଡିତ ବ୍ରହ୍ମାଙ୍କର ତୀର୍ଥଭ୍ରମଣ ସମୟଛଡ଼ା, ଅନ୍ୟ ସମସ୍ତ ଦିନ ସକାଳ ସନ୍ଧ୍ୟା ଓ ରାତିରେ ପ୍ରାୟ ଛଅଘଣ୍ଟା କାଳ ପୁଅକୁ ଘୋଷାଉ ଥିଲେ ।

ସଂସ୍କୃତରେ ଜ୍ଞାନ ବଢ଼ାଇବାପାଇଁ ତାଙ୍କୁ ପ୍ରଥମେ ପଢ଼ାଇଥିଲେ "ସୁଗମ କୌମୁଦୀ" । ତାପରେ ପଢ଼ାଇଲେ "ଲଘୁ ସିଦ୍ଧାନ୍ତ କୌମୁଦୀ" ତାପରେ ପଢ଼ାଇଲେ "ମଧ୍ୟ ସିଦ୍ଧାନ୍ତ କୌମୁଦୀ" ଏବଂ ଶେଷରେ ସୁବିଖ୍ୟାତ ବ୍ୟାକରଣ ଗ୍ରନ୍ଥ "ସିଦ୍ଧାନ୍ତ କୌମୁଦୀର" କେତେକ ଅଂଶ ପଢ଼ାଇଥିଲେ ।

## ପଣ୍ଡିତ ବ୍ରହ୍ମାଙ୍କ ଅସାଧାରଣ ପାଣ୍ଡିତ୍ୟ

ଏହି ପିତାପୁତ୍ରଙ୍କ ସାଧନାମୟ ଜୀବନ ଏପରି ଓତପ୍ରୋତ ଭାବରେ ଜଡ଼ିତ ଯେ, ପିତାଙ୍କ କଥା ଟିକିଏ ଭଲ ଭାବରେ ନଜାଣିଲେ ପୁଅଙ୍କର ସିଦ୍ଧିକଥା ବୁଝିହେବ ନାହିଁ । ପଣ୍ଡିତ ବ୍ରହ୍ମାଙ୍କର ଥିଲା ଅକଳ୍ପନୀୟ ସ୍ମୃତିଶକ୍ତି ସଂସ୍କୃତ ରାମାୟଣର ଚବିଶହଜାର ଶ୍ଳୋକ ଏବଂ ସଂସ୍କୃତ ଭାଗବତ ମହା-ପୁରାଣର ଅଠରହଜାର ଶ୍ଳୋକ ତାଙ୍କ ରସନାରେ ନର୍ତ୍ତନ କରୁଥିଲା । ପୁରୀରେ ଏବଂ ବାରଣାସୀରେ ସେ କେତୋଟି ସଂସ୍କୃତ ଉପାଧି ପରୀକ୍ଷା ପାସ୍ କରିଥିଲେ । କିନ୍ତୁ ନିଜପାଇଁ ମଧ୍ୟ ବାଗ୍‌ଦେବୀ ମନ୍ଦିରରେ ଗାୟତ୍ରୀମନ୍ତ୍ର ଜପ କରି ବିଲକ୍ଷଣ ସ୍ମୃତି ଶକ୍ତିର ଅଧିକାରୀ ହୋଇଥିଲେ ।

ସଂସ୍କୃତ ଭାଷାର ପ୍ରାୟ ସମସ୍ତ ବିଭାଗର ଗଣି ଗଣି ପୁସ୍ତକ ସଂଗ୍ରହ କରି ସେଗୁଡ଼ିକୁ ଆୟତ୍ତ କରିଥିଲେ । ସେ ଥିଲେ ପ୍ରାଚ୍ୟବିଦ୍ୟା ମହାର୍ଣ୍ଣବ,

ସଂସ୍କୃତର ଏକ ଚଳନ୍ତ ଜ୍ଞାନକୋଷ । ଋଗବେଦ, ସମସ୍ତ-ଉପନିଷଦ, ଶିଳ୍ପ-ଶାସ୍ତ୍ର, ଅର୍ଥଶାସ୍ତ୍ର, ଧନୁର୍ବେଦ, ସଙ୍ଗୀତବିଦ୍ୟା, ଆୟୁର୍ବେଦ, ଜ୍ୟୋତିଷ ଶାସ୍ତ୍ର, ବ୍ୟାକରଣ; ନିରୁକ୍ତ, ଛନ୍ଦ, ତନ୍ତ୍ରଶାସ୍ତ୍ର, ଧର୍ମଶାସ୍ତ୍ର, ନାଟ୍ୟଶାସ୍ତ୍ର, କାମଶାସ୍ତ୍ର, ଛଅଗୋଟି ଦର୍ଶନ ଶାସ୍ତ୍ର, ମନ୍ତ୍ରଶାସ୍ତ୍ର, ଅଠର ପୁରାଣ, ରାମାୟଣ, ମହାଭାରତ, ହରିବଂଶ, କାବ୍ୟ, ନାଟକ, ଅଳଙ୍କାର ପ୍ରଭୃତିରେ ତାଙ୍କର ପାଣ୍ଡିତ୍ୟ ଥିଲା ଚମକପ୍ରଦ । ତାଙ୍କର ଲକ୍ଷ୍ୟଥିଲା, ଏସବୁଶାସ୍ତ୍ରକୁ କିଛି କିଛି ପୁଅ ମୁଣ୍ଡରେ ଭର୍ତ୍ତି କରିଦେଲେ ସେ ହେବ ଜଣେ 'ଦିଗ୍‌ବିଜୟୀ ପଣ୍ଡିତ" । ଏ ସମ୍ପର୍କରେ ଅଧ୍ୟାପକ ବ୍ରହ୍ମା କହନ୍ତି, 'ମୁଁ ମାଟ୍ରିକ ପାସ୍ କରିବା ପରଠାରୁ ପିତାଙ୍କର ପାଣ୍ଡିତ୍ୟ ଲକ୍ଷ୍ୟ କରି ଆସିଛି । କିନ୍ତୁ ଏବେ ମୋର ପରିଣତ ବୟସରେ ମୁଁ ଅନୁଭବ କରୁଛିଯେ, ମୋ ନନା ଯଦି ଏକ ଜ୍ଞାନ ସମୁଦ୍ର ହୁଅନ୍ତି, ମୁଁ ଆଜିମଧ୍ୟ ଗୋଟିଏ ଜଳବିନ୍ଦୁରୁ ବେଶି ନୁହେଁ । ମୋଠାରେ ସେ ଯେଉଁ ମୂଳଦୁଆ ପକାଇଥିଲେ, ତାକୁହିଁ ପୁଞ୍ଜିକରି ମୁଁ ମୋର ସାଧନାମୟ ଜୀବନ ଗଠନ କରିଅଛି ।"

## ପାରଳା କଲେଜରେ ଅଧ୍ୟୟନ

୧୯୩୬ରେ ଆସିକାରୁ ମାଟ୍ରିକ ପାଶ କରିବାପରେ କଲେଜରେ ପଢିବାପାଇଁ ତରୁଣ ବ୍ରହ୍ମା ପାରଳ ଖେମୁଣ୍ଡି ଯାଇଥିଲେ । ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ପିତା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପାରଳା ମହାରାଜାଙ୍କ ଦେବାନ୍ ଥିଲେ । ପିତାଙ୍କଠାରୁ ପତ୍ରନେଇ ତାଙ୍କୁ ଦେଖାଇବାରେ ସେ ଉପନିଷଦ ପାଠ କରିବାକୁ ନିର୍ଦ୍ଦେଶ ଦେଲେ । ତରୁଣ ବ୍ରହ୍ମା ପାଠ କଲେ । ଏହାଫଳରେ କଲେଜରୁ ଆର୍ଥିକ ସାହାଯ୍ୟ ପାଇବା ସୁଗମ ହୋଇ ଯାଇଥିଲା । ୧୯୪୦ ପର୍ଯ୍ୟନ୍ତ ସେଠାରେ ରହି I A. ଏବଂ B.A ପାଶ କରିଥିଲେ । ପ୍ରଥମେ ରହିଥିଲେ ନିଜ ପିଉସା ସୁବିଖ୍ୟାତ ପଣ୍ଡିତ ସ୍ୱର୍ଗତ ଗୋପୀନାଥ ନନ୍ଦଙ୍କ ଘରେ । ପରେ ରହିଲେ କଲେଜ ଛାତ୍ରାବାସରେ । ଓଡ଼ିଶାର ସ୍ୱର୍ଗତ ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଏବଂ

ଶ୍ରୀ ବ୍ରହ୍ମା ବି.ଏ ବେଳେ ସହପାଠୀ ଥିଲେ ଏବଂ ମହାତ୍ମାଙ୍କ ଗ୍ରନ୍ଥାଗାରରେ ଏକାଠି ରହୁଥିଲେ । ସେହି ସମୟରେ ସମଗ୍ର ଓଡ଼ିଶାରେ କମ୍ପନ ସୃଷ୍ଟି କରିଥିବା 'ନିଆଁ ଖୁଣ୍ଟା'ର ସମ୍ପାଦକ ସ୍ୱନାମଧନ୍ୟ କବି ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ପାରଳାଖେମୁଣ୍ଡି ଯାଇଥିଲେ । ପଞ୍ଚମଶ୍ରେଣୀରୁ ବି.ଏ ପର୍ଯ୍ୟନ୍ତ ସମସ୍ତ ଶ୍ରେଣୀର ତର୍କ ପ୍ରତିଯୋଗିତାରେ ଶ୍ରୀ ବ୍ରହ୍ମା ଅଂଶ ଗ୍ରହଣ କରୁଥିଲେ । ପୁଣି ବହୁବାର ପୁରସ୍କୃତ ହୋଇଥିଲେ । ୧୯୪୦ରେ ପାରଳାରେ ଶ୍ରୀ ବ୍ରହ୍ମା ଗୋଟିଏ ଭାଷଣ ଦେଉଥିବେଳେ ଗୋଦାବରୀଶ ମହାପାତ୍ର ଉପସ୍ଥିତ ଥିଲେ । ଶ୍ରୀ ବ୍ରହ୍ମାଙ୍କ ବାଗ୍ମିତାରେ ମୁଗ୍ଧ ହୋଇ ସେତିକି ବେଳୁ ତାଙ୍କୁ ଜାମାତା କରିବାକୁ ସ୍ଥିର କରିନେଲେ । ୧୯୪୧ ଶ୍ରୀପଞ୍ଚମୀର ମାତ୍ର ଦୁଇଦିନ ପୂର୍ବରୁ ମହାପାତ୍ର ମହୋଦୟ ସମ୍ପାଦକ ଶ୍ରୀ ହର୍ଷ ମିଶ୍ରଙ୍କ ସହିତ ଯାଇ ଆସିକାରେ ପଣ୍ଡିତ ବ୍ରହ୍ମାଙ୍କ ନିକଟରେ ପହଞ୍ଚିଲେ । ସଙ୍ଗେ ସଙ୍ଗେ ବିବାହ କଥା ସ୍ଥିର ହୋଇଗଲା । ଆଜିକାଲି ଯେପରି ବିବାହ ପୂର୍ବରୁ ଜାତକ ମିଳାଯାଉଛି, ତାହା ଶିଷ୍ଟ ବ୍ରାହ୍ମଣ କୁଳରେ ଆଗେ ନଥିଲା । କେବଳ ବିବାହ କଥା ସ୍ଥିର ହୋଇଗଲା । ଦୁଇଦିନପରେ ବାଣପୁର ନିକଟବର୍ତ୍ତୀ ମହାପାତ୍ରଙ୍କ ନିଜଗ୍ରାମ "କୁମାରଙ୍ଗ"ରେ କୁମାରୀ ସତ୍ୟଭାମାଙ୍କ ସହିତ ବିବାହ କାର୍ଯ୍ୟ ସମ୍ପାଦିତ ହେଲା । ସେଦିନ ଠାରୁ ଯୁବକ ବ୍ରହ୍ମାଙ୍କ ଭାଗ୍ୟର ନବଦିଗନ୍ତ ଖୋଲିଗଲା । ସୁପରିଚିତ କବି ଗୋଦାବରୀଶ ମହାପାତ୍ରଙ୍କ ଜାମାତା ଭାବରେ ଯୁବକ ବ୍ରହ୍ମା କଟକ ଏବଂ ପୁରୀରେ ପରିଚିତ ହେଲେ । କବି ଭାବରେ ଏବଂ ନିଆଁଖୁଣ୍ଟାର ସମ୍ପାଦକ ଭାବରେ ସେତେବେଳକୁ ମହାପାତ୍ରଙ୍କ ନାମ ସାରା ଓଡ଼ିଶାରେ ବ୍ୟାପି ଯାଇଥିଲା । ନିଜ ପତ୍ରିକାର ଖବର ସଂଗ୍ରହ ପାଇଁ ସେ ସାରା ଓଡ଼ିଶା ବୁଲୁଥିଲେ । ତାପରେ ନିଜ ଜାମାତାଙ୍କୁ ସଙ୍ଗରେ ନେଇ ସମଗ୍ର ଓଡ଼ିଶା ସଙ୍ଗେ ତାଙ୍କୁ ପରିଚିତ କରାଇ ଦେଲେ । ଯୁବକ ବ୍ରହ୍ମା "ନିଆଁଖୁଣ୍ଟା-ଜୋଇଁ" ଭାବରେ ପରିଚିତ ହେଲେ ।

୧୯୪୧ ଖରାଦିନେ ସେ ଶ୍ୱଶୁରଙ୍କ ସହିତ କଟକ ଦରଘା ବଜାରରେ ରହୁଥିଲେ । ସେତେ ବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇନାହିଁ । ରେଭେନ୍‌ସା କଲେଜରେ ଏମ୍. ଏ. ଏବଂ Law ପଢ଼ିବାପାଇଁ ବ୍ରହ୍ମା

ଇଚ୍ଛା ପ୍ରକାଶ କଲେ । ମହାପାତ୍ରଙ୍କ ଠାରୁ ଏକଥା ଜାଣିବାପରେ ମହାପାତ୍ରଙ୍କର ଗୁରୁ, ବନ୍ଧୁ ଏବଂ ମାର୍ଗଦ୍ରଷ୍ଟା ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କୁ ବାଣପୁର ହାଇସ୍କୁଲକୁ ଶିକ୍ଷକରୂପେ ଯିବାପାଇଁ ପରାମର୍ଶ ଦେଲେ । ୧୯୪୧ ରେ ଯେଉଁଦିନ ବିଶ୍ୱକବି ରବୀନ୍ଦ୍ରନାଥଙ୍କର ପରଲୋକ ହେଲା, ତାହାର କେତେକଦିନ ପରେ ଶ୍ରୀଯୁକ୍ତ ବ୍ରହ୍ମା ବାଣପୁର ହାଇସ୍କୁଲରେ ଶିକ୍ଷକରୂପେ ଯୋଗଦେଲେ । ବାଣପୁରର ଆଡ୍‌ଭୋକେଟ୍ ଶ୍ରୀଯୁକ୍ତ ହରିହର ମହାପାତ୍ର ତାଙ୍କର 'ବାଣପୁର ବନବିଦ୍ୟାଳୟ' ପୁସ୍ତକରେ ଏବଂ ଜାମ୍‌ସେଦ-ପୁରର ଶିକ୍ଷକ ଶ୍ରୀ ରଘୁନାଥ ମହାପାତ୍ର ସେ ସମ୍ପର୍କୀୟ ଅନ୍ୟ ଏକ ପୁସ୍ତକରେ ଅଧ୍ୟାପକ ବ୍ରହ୍ମାଙ୍କ ଗୌରବମୟ ଶିକ୍ଷକ ଜୀବନ କଥା ବର୍ଣ୍ଣନା କରିଛନ୍ତି ।

## B. A. ପରେ D.Ed ଟ୍ରେନିଙ୍ଗ୍

ସେଠାରେ ପ୍ରାୟ ଏକବର୍ଷ ଶିକ୍ଷକ ରହିବାପରେ ଶିକ୍ଷକ ଟ୍ରେନିଂ ପାଇବାପାଇଁ ଅଧ୍ୟାପକ ବ୍ରହ୍ମା କଟକ ଆସିଗଲେ । ଆଜି ଯାହାର ନାମ "ରାଧାନାଥ ଟ୍ରେନିଂ କଲେଜ" ସେଠାରେ ସେ ଯୋଗଦେଲେ । ୧୯୪୨ ଜୁଲାଇରୁ ୧୯୪୩ ମେ ମଧ୍ୟରେ ସେ ସେଠାରେ ତାଲିମପ୍ରାପ୍ତ ହୋଇ, ବିହାର ଏବଂ ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ଅଧିକାର କଲେ । ଏ କଲେଜଟି ସେତେବେଳେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ।

## ଦିଗପହଣ୍ଡିରେ ପ୍ରଧାନ ଶିକ୍ଷକତା—

ଏହି D. Ed (Diploma-in-Education) ପରୀକ୍ଷାର ଫଳ ବାହାରିଲା ବେଳକୁ ଗଞ୍ଜାମ ଜିଲ୍ଲାର ବଡଖେମୁଣ୍ଡି ରାଜ୍ୟର ରାଜା ତାଙ୍କ ହାଇସ୍କୁଲ ପାଇଁ ଜଣେ ହେଡ୍‌ମାଷ୍ଟର ଖୋଜୁଥିଲେ । ସେତେବେଳେ ହେଡମାଷ୍ଟରମାନେ ମାସିକ ଶହେରୁ କମ୍ ଟଙ୍କା ପାଉଥିଲେ । କିନ୍ତୁ ଶ୍ରୀଯୁକ୍ତ ବ୍ରହ୍ମାଙ୍କୁ ଆରମ୍ଭରୁ ଶହେଦଶଶ ଟଙ୍କା ମିଳିଲା । ସେତେବେଳେ ଘରୋଇ କଲେଜରେ ମଧ୍ୟ ଅଧ୍ୟାପକଙ୍କୁ ଏତେଟଙ୍କା ଦିଆଯାଉ ନଥିଲା ।

ମୋଟାମୋଟି ୧୯୪୩ ଜୁନ୍‌ମାସରୁ ୧୯୪୪ ଅକ୍ଟୋବର ପର୍ଯ୍ୟନ୍ତ ଶ୍ରୀଯୁକ୍ତ ବ୍ରହ୍ମା ଜଗତ୍‌ସିଂହପୁର ସହରସ୍ଥିତ ହାଇସ୍କୁଲରେ ଶିକ୍ଷକତା କରିଥିଲେ ।

## କଟକ ଟ୍ରେନିଙ୍ଗ୍ ସ୍କୁଲରେ ଶିକ୍ଷକତା—

ତାପରେ ଘଟଣା ଚକ୍ରରେ ପଡ଼ି ସେ କଟକ ଚାଲି ଆସିଲେ । ତତ୍‌କାଳୀନ ବିଖ୍ୟାତ D. P. I. ଶ୍ୟାମାଚରଣ ତ୍ରିପାଠୀ ଏବଂ ଅଧ୍ୟକ୍ଷ ଶ୍ରୀ ମହେଶ ଚନ୍ଦ୍ର ପ୍ରଧାନଙ୍କ ଆନୁକୂଲ୍ୟ ହେତୁ କଟକ ଟ୍ରେନିଂ ସ୍କୁଲର ଶିକ୍ଷକ ଭାବେ ଯୋଗଦେଲେ । ଏହି ସମୟରୁ ତାଙ୍କର ଜୀବନ ବକ୍ତୃତାମୟ ହୋଇଗଲା । ୧୯୪୦ରୁ ଗ୍ରେଟ ବଡ଼ ଅନେକ ସଭାରେ ସେ କହୁଥିଲେ । କିନ୍ତୁ ୧୯୪୫ ଆରମ୍ଭରୁ ତାଙ୍କର ଜୀବନ "ବକ୍ତୃତାମୟ" ହୋଇଗଲା । କଟକ ସହରର ଯେତେକ ସ୍ଥାନରେ ଧର୍ମସଭା, ସାହିତ୍ୟସଭା ଓ ସାଂସ୍କୃତିକ ସଭା ହେଉଥିଲା, ପ୍ରାୟ ସବୁ ସଭାକୁ ସେ ଯାଉଥିଲେ ଏବଂ ଅଧିକାଂଶ ସଭାରେ ଭାଷଣ ଦେଉଥିଲେ । ଏପରି ହେଲାଯେ, ବର୍ଷେ ଦୁଇବର୍ଷ ମଧ୍ୟରେ ତାଙ୍କର ନାମ ଚାରିଆଡ଼େ ବ୍ୟାପିଗଲା ।

୧୯୪୫ ଆରମ୍ଭରୁ ୧୯୪୬ ଜୁଲାଇ ପର୍ଯ୍ୟନ୍ତ ଦେଢ଼ ବର୍ଷକାଳ ସେ ଥିଲେ ଟ୍ରେନିଂସ୍କୁଲର ଶିକ୍ଷକ । ଟ୍ରେନିଂସ୍କୁଲର ସମୃଦ୍ଧ ଓଡ଼ିଆ ପାଠାଗାର ତାଙ୍କରପ୍ରିୟସ୍ଥାନ ହୋଇପଡ଼ିଲା । ସଂସ୍କୃତରେ ତାଙ୍କର କୌଣସି ଡ଼ିଗ୍ରୀନଥିଲା । କିନ୍ତୁ ତାଙ୍କୁ I. A. ସ୍ତରରେ ସଂସ୍କୃତ ପାଠ୍ୟପଢ଼ାଇବା ପାଇଁ ଦିଆଯାଇଥିଲା । ସେ କ୍ଲାସ ନେଉଥିବାବେଳେ ସ୍ୱନାମଧନ୍ୟ ସଂସ୍କୃତ ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ପରି—ଦର୍ଶକ ଭାବେ ଅଣାଯାଇଥିଲା । ସେ ଶ୍ରୀଯୁକ୍ତ ବ୍ରହ୍ମାଙ୍କ ଅଧ୍ୟାପନାରେ ସନ୍ତୁଷ୍ଟ ହୋଇ ସୁପାରିଶ କରିବାରୁ, ସଂସ୍କୃତ ଉପାଧି ନଥାଇ ମଧ୍ୟ ଶ୍ରୀଯୁକ୍ତ ବ୍ରହ୍ମା ଏଭଳି ଏକ ଉଚ୍ଚ କୋଟୀର ସରକାରୀ ଶିକ୍ଷାନୁଷ୍ଠାନରେ ସଂସ୍କୃତ ଶିକ୍ଷକ ହୋଇପାରିଥିଲେ ।

## କଟକ ଖ୍ରୀଷ୍ଟକଲେଜର ଓଡ଼ିଆ ଅଧ୍ୟାପକ—

ତାହାପରେ, ୧୯୪୬ ଜୁଲାଇ-ଅଗଷ୍ଟମାସରେ କଟକ ଖ୍ରୀଷ୍ଟକଲେଜର ସେ ହେଲେ ଓଡ଼ିଆ ଅଧ୍ୟାପକ । ୧୯୪୩ ନଭେମ୍ବରମାସରେ ଉତ୍କଳ ବିଶ୍ୱ-ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୪୪ ଅଗଷ୍ଟ ମାସରେ ସରକାରୀଭାବରେ

ଶ୍ରୀଯୁକ୍ତ ବ୍ରହ୍ମା ଓଡ଼ିଆ ଏମ୍. ଏ. ପରୀକ୍ଷା ଦେଇଥିଲେ । ଅନେକ କୃତବିଦ୍ୟ-ଯୁବକ ସେ ପରୀକ୍ଷା ଦେଲେ, ସତ ! କିନ୍ତୁ ପରୀକ୍ଷାରେ ଦେଖାଗଲା, ଗୋଟିଏ ଝିଅ କେବଳ ଦ୍ୱିତୀୟ ଶ୍ରେଣୀ ପାଇଲା । ଅନ୍ୟ ସମସ୍ତେ ତୃତୀୟ ଶ୍ରେଣୀ ପାଇଲେ । ସେ ଦିନରୁ କେତେକ ତୁଙ୍ଗ ଜନନାୟକଙ୍କ ପ୍ରତି ବ୍ରହ୍ମାଙ୍କ ମନରେ ତୀବ୍ର ଘୃଣା ଭାବ ଜାତ ହୋଇଥିଲା । କିନ୍ତୁ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରାଚୀନ ଓଡ଼ିଆ ସାହିତ୍ୟର ପିତାମହ, ପୂଜନୀୟ ଡକ୍ଟର ଆର୍ତ୍ତିବଲ୍ଲଭ ମହାନ୍ତିଙ୍କ ଆଶୀର୍ବାଦ ବଳରେ ଶ୍ରୀଯୁକ୍ତ ବ୍ରହ୍ମା ଖ୍ରୀଷ୍ଟକଲେଜରେ ଅଧ୍ୟାପକ ହୋଇ ପାରିଥିଲେ ।

ଖ୍ରୀଷ୍ଟକଲେଜରେ ସେ ରହିଲେ ୧୯୪୭ ଅଗଷ୍ଟରୁ ୧୯୫୦ ସେପ୍ଟେମ୍ବର ୨୦ ତାରିଖ ପର୍ଯ୍ୟନ୍ତ । ସେ ସେଠାରେ ଥିବା ଭିତରେ ବିଶିଷ୍ଟ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ଇତିହାସ ଅଧ୍ୟାପକ ରୂପେ ଯୋଗଦେଲେ । ୧୯୫୦ ସେପ୍ଟେମ୍ବର ୨୦ ତାରିଖରେ ଦୁହେଁଯାକ ଖ୍ରୀଷ୍ଟକଲେଜରୁ ବିଦାୟ ନେଇ, ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗଦେଇଥିଲେ । ଖ୍ରୀଷ୍ଟକଲେଜରେ ଅଧ୍ୟାପକ ବ୍ରହ୍ମା ରହିବା ଭିତରେ ଲଗାତାର ଲଗ୍ ଲଗ୍ ଓଡ଼ିଆ ଅନର୍ସରେ ତାଙ୍କର ଜଣେ ଜଣେ ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଫଳରେ ସୁବିଖ୍ୟାତ ରେଭେନ୍ସା ମହାବିଦ୍ୟାଳୟ ଏହି ଦ୍ୱାରା ନିଷ୍ପ୍ରଭ ହୋଇଯାଇଥିଲା । ୧୯୫୦ରେ ଅଧ୍ୟାପକ ବ୍ରହ୍ମା ରେଭେନ୍ସା କଲେଜକୁ ଆସିଯିବାପରେ ଖ୍ରୀଷ୍ଟକଲେଜର ଏହି ଗୌରବ ଅପସରି ଯାଇଥିଲା ।

## ରେଭେନ୍ସା କଲେଜର ଓଡ଼ିଆ ଅଧ୍ୟାପକ—

୧୯୫୦ ସେପ୍ଟେମ୍ବର ୨୦ ତାରିଖଠାରୁ ୧୯୫୮ ଜୁନ୍ ପର୍ଯ୍ୟନ୍ତ ଅଧ୍ୟାପକ ବ୍ରହ୍ମା ରେଭେନ୍ସା କଲେଜର "ସଂସ୍କୃତ ଏବଂ ଓଡ଼ିଆ ବିଭାଗର" ଅଧ୍ୟାପକ ଥିଲେ । ଅଧ୍ୟାପକ ଭାବରେ, ବକ୍ତା ଭାବରେ, ସମାଲୋଚକ ଭାବରେ ଏବଂ ଓଡ଼ିଆ ସଂସ୍କୃତିର ସୁଦକ୍ଷ ପ୍ରଚାରକ ଭାବରେ ତଥା ଭଞ୍ଜ ସାହିତ୍ୟର ସୁନାମଧନ୍ୟ ପରିବେଷକ ଭାବରେ ଅଧ୍ୟାପକ ବ୍ରହ୍ମାଙ୍କର ଖ୍ୟାତି ସମଗ୍ର ଓଡ଼ିଶାରେ ବ୍ୟାପି ଯାଇଥିଲା ।

## ତିନି ଏକାଡେ଼ମୀର ସଂପାଦକ :-

ଏହି ସମସ୍ତ ମଧ୍ୟରେ ସେ ପ୍ରାୟ ତିରିଶବର୍ଷ ବ୍ୟାପୀ ସହସ୍ରାଧିକ ଭାଷଣ ଦେଇ ଲକ୍ଷ ଲକ୍ଷ ଶ୍ରୋତାଙ୍କ ମନରେ ନିଜପାଇଁ ରତ୍ନ ସିଂହାସନ ସ୍ଥାପନ କରିପାରିଥିଲେ । ୧୯୫୭ଶେଷଭାଗରେ ଓଡ଼ିଶା ସରକାର ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପ୍ରତିଷ୍ଠା କଲେ । ୧୯୫୮ଜୁନ୍ ମାସରେ ଓଡ଼ିଶା ସରକାର ଅଧ୍ୟାପକ ବ୍ରହ୍ମାଙ୍କୁ ରେଭେନ୍ସା କଲେଜରୁ ଆଣି ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଏବଂ ଓଡ଼ିଶା ସଙ୍ଗୀତ ନାଟକ ଏକାଡେ଼ମୀର ସଂପାଦକ ଭାବରେ ଅବସ୍ଥାପିତ କଲେ । ତା ପରେ, ଓଡ଼ିଶା ଲଳିତକଳା ଏକାଡେ଼ମୀ ପ୍ରତିଷ୍ଠିତ ହେଲା । ଅଧ୍ୟାପକ ବ୍ରହ୍ମା ଏକ ସମୟରେ ଏହି ତିନୋଟିଯାକ ରାଜ୍ୟସ୍ତରୀୟ ସଂସ୍ଥାର ସମ୍ପାଦକ ହେଲେ । ୧୯୫୮ରୁ ୧୯୬୮ ମାର୍ଚ୍ଚ ମଧ୍ୟରେ ଅଧ୍ୟାପକ ବ୍ରହ୍ମା କେବଳ ପ୍ରାୟ ଗୋଟିଏ ବର୍ଷକୁ ଛାଡ଼ି, ଦୀର୍ଘ ଆଠ ନଅବର୍ଷ ସଂପାଦକ ଥିଲେ । କିଛି ଦିନ ପାଇଁ Orissa sports council ର ମଧ୍ୟ ସଂପାଦକ ଥିଲେ । ପ୍ରଥମ ତିନୋଟି ସଂସ୍ଥା ଅଧ୍ୟାପକ ବ୍ରହ୍ମାଙ୍କ ଯତ୍ନରେ ଦୃଢ଼ୀଭୂତ ଏବଂ ସଂପ୍ରସାରିତ ହୋଇଥିଲା । ବହୁ ସାହିତ୍ୟିକ ଏବଂ କଳାକାରଙ୍କର ନାନାବିଧ ବିରୋଧାତ୍ମକ କାର୍ଯ୍ୟକଳାପ ସତ୍ତ୍ୱେ ଅଧ୍ୟାପକ ବ୍ରହ୍ମା କେବଳ ନିଜର କାର୍ଯ୍ୟ ଦକ୍ଷତା ବଳରେ ଏତେଦିନ ଧରି ରହିପାରିଥିଲେ । ସାହିତ୍ୟ ଏକାଡେ଼ମୀ ପକ୍ଷରୁ ଶତାଧିକ ପୁସ୍ତକ ପ୍ରକାଶ କରିଥିଲେ ଏବଂ ବଡ଼ ଧରଣର ଲେଖକ ସମ୍ମିଳନୀ କରିଥିଲେ । ସଙ୍ଗୀତ ଏକାଡେ଼ମୀ ପକ୍ଷରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଅନେକ ବିଦ୍ୟାଳୟ ଖୋଲିଥିଲେ ଏବଂ କୃତୀ କଳାକାରମାନଙ୍କୁ ଉତ୍ସାହିତ କରିଥିଲେ । ସେହିପରି, ଲଳିତକଳା ଏକାଡେ଼ମୀ ପାଇଁ ମଧ୍ୟ ଅନେକ କାର୍ଯ୍ୟ କରିଥିଲେ । ସେ ସମ୍ପାଦକ

ଥିବାବେଳେ ଭୁବନେଶ୍ୱରର "ଉତ୍କଳ ସଂଗୀତ ମହାବିଦ୍ୟାଳୟ" ପ୍ରତିଷ୍ଠିତ ହୋଇଥିଲା ।

## ଛୁଟି ଭିତରେ ଋଷିଆ ଯାତ୍ରା :-

୧୯୬୮ରେ ସେ ଅସୁସ୍ଥ ହୋଇ ପଡ଼ିବାରୁ ଦୀର୍ଘଦିନ ଛୁଟି ନେଇଥିଲେ । ତାଙ୍କ ଭିତରେ ଋଷିଆ ଏବଂ ମଙ୍ଗୋଲିଆ ଭ୍ରମଣରେ ଯିବାପାଇଁ ଭାରତ ସରକାର ତାଙ୍କୁ ବାଛିଥିଲେ । ସେ ବର୍ଷ ମେ ମାସ ପନ୍ଦରରୁ ସେ ଋଷିଆ ଏବଂ ମଙ୍ଗୋଲିଆ ଯାଇ ଜୁନ୍ ମାସ ୧୫ ତାରିଖରେ ଓଡ଼ିଶା ଫେରି ଆସିଥିଲେ । ଭ୍ରମଣ କାଳରେ ସେ ଋଷିଆର ମସ୍କୋ ମହାନଗରୀ, ଲେନିନ୍‌ଗ୍ରାଡ୍, ତିବିଲିସି, ତାସ୍‌କେଣ୍ଟ୍, ସମରକେଣ୍ଟ୍, ବୁଖାରା ପ୍ରଭୃତିରେ ବହୁ ଭାଷଣ ଦେଇ ଏବଂ ମସ୍କୋ ରେଡ଼ିଓରେ ତିନୋଟି ଇଂରାଜୀ ଭାଷଣ ଦେଇ ଭାରତୀୟ ସଂସ୍କୃତି ପ୍ରଚାର କରିଥିଲେ । ମଙ୍ଗୋଲିଆରେ ମଧ୍ୟ କେତୋଟି ଭାଷଣ ଦେଇଥିଲେ । ଲେନିନ୍‌ଗ୍ରାଡ୍ ବିଶ୍ୱ ବିଦ୍ୟାଳୟରେ ତାଙ୍କର ସଂସ୍କୃତ ଭାଷଣ ଏକାନ୍ତ ସ୍ମରଣୀୟ ବୋଲି ସେ କହିଥିଲେ ।



# ପର୍ଯ୍ୟଟନ ବିଭାଗରେ ନିଯୁକ୍ତି

୧୯୬୭ ମାର୍ଚ୍ଚ ମାସ ଶେଷରେ ଅଧ୍ୟାପକ ବ୍ରହ୍ମା ପୀଡ଼ିତ ହୋଇ ପଡ଼ିଲେ । ସେ କହନ୍ତି- "ମୋର ଅନେକ ବନ୍ଧୁ ମୋର ଏକାଡ଼େମୀରେ ତଥା ସଂସ୍କୃତି ବିଭାଗରେ ଉଚ୍ଚ ଆସନ ଲାଭ ହେତୁରୁ ମତେ ଭୁବନେଶ୍ୱରରୁ ଦୂରକୁ ହଟାଇ ଦେବାକୁ ଲାଗିପଡ଼ିଲେ । ମତେ ଶିକ୍ଷା ବିଭାଗକୁ ଫେରାଇ ନେଇ ଦୂରସ୍ଥିତ କଲେଜରେ ଓଡ଼ିଆ ଅଧ୍ୟାପକ ରୂପେ ଅବସ୍ଥାପିତ କଲେ । ମୁଁ ଛୁଟିନେ ରହି ନଖାଇ, ନପିଇ, କାନ୍ଦି କାନ୍ଦି ଜଗନ୍ନାଥଙ୍କୁ ଜଣାଇଲି । ଫଳରେ ୪, ୫ ଜଣ ମନ୍ତ୍ରୀ ମତେ ହଟାଇବାକୁ ଆଦେଶ କରାଇ ସାରିଥିଲେ ମଧ୍ୟ, ତାହା ବାଏଁ ବାଏଁ ଉଡ଼ିଗଲା । ମୁଁ ଅଟଳ ମହାମେରୁ ପରି ରାଜଧାନୀରେ ବସିରହିଲି । ପରେ ସ୍ଥିର କଲି ଯେ ଆନ୍ଧ୍ର ପ୍ରଦେଶକୁ ଚାଲିଯାଇ, ସ୍ଥାୟୀ ବାସିନ୍ଦା ହୋଇଯିବି । ସବୁ ଠିକ୍ କଲି । କିନ୍ତୁ ଜଗନ୍ନାଥଙ୍କୁ ଜଣାଇବାରୁ "ନିଷେଧ" ଆଦେଶ ସ୍ୱପ୍ନରେ ପାଇଲି । ହଠାତ୍ Chief Tourist Guide ପଦବୀ ଖାଲିହେଲା । ପରମଗୁଣ ଗ୍ରାହକ ମୁଖ୍ୟମନ୍ତ୍ରୀ ପାଟଣା ମହାରାଜା ମତେ ଏହି ପଦବୀରେ ଅବସ୍ଥାପିତ କଲେ । ଏଥିରେ ବିଚଳିତ ହୋଇ ମୋର ବନ୍ଧୁମାନେ ଦୈନିକ କାଗଜରେ ଲେଖାଇଲେ ଯେ, ଏ ପଦ ପାଇଁ ମୁଁ ଅଯୋଗ୍ୟ । କିନ୍ତୁ ମୁଁ ରହିଲି । ମୋର ଇଂରାଜୀ-ବାଗ୍ମିତା ଏବଂ ଇତିହାସ ଜ୍ଞାନ ସହିତ ପ୍ରକାଶ ଭଙ୍ଗୀରେ ହଜାର ହଜାର ବୈଦେଶିକ ପର୍ଯ୍ୟଟକଙ୍କୁ ମୁଗ୍ଧ କଲି । ଏ ସମ୍ପର୍କରେ ମୁଁ ଆଉ ଅଧିକ ନକହିଲେ ଭଲ ।"

୧୯୬୮ ବେଳକୁ 'ପର୍ଯ୍ୟଟନବିଭାଗ' ଗଠିତ ହୋଇନଥିଲା । ଲୋକସମ୍ପର୍କ ବିଭାଗର ଏକ ଶାଖାରୂପେ ଏହା ରହିଥିଲା । ଏଗାର ମାସ ଏଗାର ଦିନ ଛୁଟିରେ ରହିବାପରେ ସେ Chief Tourist Guide ଭାବରେ ଯୋଗଦେଲେ । ପ୍ରାୟ ପ୍ରତିଦିନ ବିଶିଷ୍ଟବ୍ୟକ୍ତିଙ୍କୁ ନେଇ, ପୁରୀ, କୋଣାର୍କ ଚିଲିକା ପ୍ରଭୃତି ସ୍ଥାନ ସୁଖପ୍ରଦ ଯାନରେ ଭ୍ରମଣ କଲେ ।

୧୯୭୩ରେ ଓଡ଼ିଶା ସରକାରଙ୍କ "ସ୍ୱତନ୍ତ୍ର ପର୍ଯ୍ୟଟନବିଭାଗ" ଗଠିତ ହେଲା । ଅଧ୍ୟାପକ ବ୍ରହ୍ମା ଏହି ବିଭାଗର ଉପ-ନିର୍ଦ୍ଦେଶକ ହେଲେ । ବିଭିନ୍ନ

ପର୍ଯ୍ୟଟକଙ୍କୁ ନେଇ ଭୁବନେଶ୍ୱରର ପ୍ରଖ୍ୟାତ ମନ୍ଦିରମାଳା, ପୁରୀ ମନ୍ଦିର, କୋଣାର୍କ ମନ୍ଦିର, ଚିଲିକା, କଟକ ସହର, ପୁଷ୍ପଗିରି ବିହାର, ବାଲେଶ୍ୱରର ଚନ୍ଦିପୁର, ମୟୂରଭଞ୍ଜର ଖିଚିଙ୍ଗ ମନ୍ଦିର ଓ ଶିମିଳିପାଳ ଅଭୟାରଣ୍ୟ ତଥା ସମସ୍ତ ଜିଲ୍ଲାର ବିଶିଷ୍ଟ ଦର୍ଶନୀୟ ସ୍ଥାନମାନଙ୍କୁ ସେ ବାରମ୍ବାର ଯାଉଥିଲେ । ବିଶିଷ୍ଟ ପର୍ଯ୍ୟଟକମାନେ ଓଡ଼ିଶାର ମନ୍ଦିରକଳା, ସଙ୍ଗୀତକଳା, ନୃତ୍ୟକଳା, ଚିତ୍ରକଳା ଇତ୍ୟାଦି ଇତ୍ୟାଦି ସମ୍ପର୍କରେ ନାନା ପ୍ରଶ୍ନ ପଚାରୁଥିଲେ । ଯଦିଓ ଅଧ୍ୟାପକ ବ୍ରହ୍ମା ଦୀର୍ଘକାଳ ଧରି ଓଡ଼ିଶାର ଭାଷା, ସାହିତ୍ୟ, କଳା, ସଙ୍ଗୀତ, ନୃତ୍ୟ ଇତ୍ୟାଦି ଇତ୍ୟାଦି ସମ୍ପର୍କରେ ବହୁ ଜ୍ଞାନ ଅର୍ଜନ କରିଥିଲେ, ତଥାପି ସେ ଅନୁଭବ କରୁଥିଲେ ଯେ, ବିଭିନ୍ନ ଧରଣର ପର୍ଯ୍ୟଟକଙ୍କ ପାଇଁ ତାଙ୍କ ଜ୍ଞାନ ଯଥେଷ୍ଟ ନୁହେଁ । ତେଣୁ ଓଡ଼ିଶାର ପ୍ରତ୍ନତତ୍ତ୍ୱ, ଅଭିଲେଖ, ମନ୍ଦିରକଳା, ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ଧର୍ମ, କୋଣାର୍କ ମନ୍ଦିର ଓ ପ୍ରାଚୀନ ବନ୍ଦର ଏବଂ ବିଭିନ୍ନ ଅଞ୍ଚଳର ଲୋକ ସଂସ୍କୃତି ସମ୍ପର୍କରେ ତାଙ୍କୁ ବହୁ ଗ୍ରନ୍ଥ ଅଧ୍ୟୟନ କରିବାକୁ ପଡ଼ିଥିଲା । ଜୀବନଯାକ ଭାଷଣ ଦେଇ ଦେଇ ନିଜର ଜ୍ଞାନ ଏବଂ ମତ ପରିବେଷଣ କ୍ଷେତ୍ରରେ ସେ ଯେଉଁ କୌଶଳ ଅର୍ଜନ କରିଥିଲେ, ତାକୁ ପର୍ଯ୍ୟଟନ କ୍ଷେତ୍ରରେ ପ୍ରୟୋଗ କରି, ଅତୁଳନୀୟ ଗୌରବ ଲାଭ କଲେ । ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ, ଉପରାଷ୍ଟ୍ରପତି, ମହାମାନ୍ୟ ଦଲାଇଲାମା, ମହାମାନ୍ୟ ଶ୍ୱଲିତ ରାଜକୁମାର ଶ୍ରୀଯୁକ୍ତ ଚାର୍ଲସ୍, ସୁପ୍ରିମ୍ କୋର୍ଟର ପ୍ରଧାନ ବିଚାରପତି, ବହୁ କେନ୍ଦ୍ରମନ୍ତ୍ରୀ, ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀ, ବହୁ ହାଇକୋର୍ଟର ମୁଖ୍ୟ ବିଚାରପତି ତଥା ବିଚାରପତି, ଶିଳ୍ପପତି, ସାମ୍ବାଦିକ, ବହୁ ସଂଖ୍ୟକ ବିଶ୍ୱବିଦ୍ୟାଳୟର କୁଳପତି, ପୃଥିବୀର ବିଭିନ୍ନ ଦେଶର ତୁଙ୍ଗ ପଦାଧିକାରୀ ମହାମାନ୍ୟ ଗୁରୁଜୀ ଫୁଜୀ, ବହୁ ରାଜ୍ୟପାଳ ଏବଂ ବିଭିନ୍ନ କ୍ଷେତ୍ରର ଭାରତ ବିଖ୍ୟାତ ବ୍ୟକ୍ତି, ସହସ୍ର ସହସ୍ର ଉଚ୍ଚ ଶିକ୍ଷିତ ବୈଦେଶିକ ପର୍ଯ୍ୟଟକ, ବହୁସଂଖ୍ୟକ ଲୋକସଭା ଏବଂ ରାଜ୍ୟସଭା ସଦସ୍ୟ-ଏଭଳି ଅସଂଖ୍ୟ ବିଶିଷ୍ଟ ବ୍ୟକ୍ତିଙ୍କର ପ୍ରଦର୍ଶକ ରୂପେ ସେ ଦୀର୍ଘ ଆଠବର୍ଷ କଟାଇଥିଲେ । ସମଗ୍ର ଓଡ଼ିଶାର ତେର ଜିଲ୍ଲାଯାକ ସେ ବାରମ୍ବାର ଭ୍ରମଣ କରୁଥିଲେ,

ବିଭିନ୍ନ ବୃତ୍ତିର ପର୍ଯ୍ୟଟକ ମାନଙ୍କର ପ୍ରଦର୍ଶକ ଭାବରେ । ଏହିପରି ଭାବରେ ଦୀର୍ଘ ଆଠବର୍ଷ କାଳ ସେ ସୂର୍ଯ୍ୟୋଦୟରୁ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ଏକ ବ୍ୟସ୍ତତାମୟ, ଶିକ୍ଷାପ୍ରଦ ତଥା ଦେଶ ସେବାମୂଳକ ଜୀବନ ଯାପନ କରିଥିଲେ । ଫଳରେ, ଇଂରାଜୀ ବାଗ୍ମିତା କଟିଯାଇଥିଲା ।

# ଅବସର ଗ୍ରହଣ ପୂର୍ବରୁ ଓ ପରେ-

୧୯୭୬ ସେପ୍ଟେମ୍ବର ମାସ ୨୬ ତାରିଖରେ ଅଧ୍ୟାପକ ବ୍ରହ୍ମାଙ୍କର ପ୍ରିୟପୁତ୍ର ଶ୍ରୀମାନ୍ ଶିବକୁମାରର ମୃତ୍ୟୁ ଘଟିବାରୁ ସେ ଏକାବେଳେକେ ଭାଙ୍ଗିପଡ଼ିଲେ । ଏକଥା ତାଙ୍କ ପାରିବାରିକ ଜୀବନ ପ୍ରସଙ୍ଗରେ ଟିକିଏ ପରେ କୁହାଯାଇ ଦିଆଯାଇଛି । ସେ ମର୍ମାହତ ହୋଇ ଛୁଟିରେ ରହିଲେ । ତାପରେ ସରକାରଙ୍କୁ ଅନୁରୋଧ କରି ପର୍ଯ୍ୟଟନ ବିଭାଗରୁ ପୂର୍ଣ୍ଣ ଥରେ ଶିକ୍ଷାବିଭାଗକୁ ଫେରିଗଲେ । ସରକାର ବ୍ରହ୍ମାଙ୍କ ଦୁଃଖ ଉପଲବ୍ଧି କରି ତାଙ୍କୁ ରେଭେନ୍ସା କଲେଜରେ ଅବସ୍ଥାପିତ କଲେ । ୧୯୭୮ ମାର୍ଚ୍ଚ ପନ୍ଦରରେ ଅଧ୍ୟାପକ ବ୍ରହ୍ମା ସରକାରୀ ଚାକିରୀରୁ ଅବସର ଗ୍ରହଣ କଲେ । ଆଶା କରାଯାଏ, ଅବସର ଗ୍ରହଣ ପରେ ସଭାପତି, ଉପଦେଷ୍ଟା ପ୍ରଭୃତି ଭାବରେ ସେ ଗ୍ରହଣ କରିଥିବା ବହୁ ଦାୟିତ୍ବ ଅଧିକ କାଳଧରି ତାଙ୍କ ଉପରେ ନ୍ୟସ୍ତ ରହିବ । ୧୯୮୩ରୁ ଭୁବନେଶ୍ବରଠାରେ ପ୍ରତିଷ୍ଠିତ ରିଜିଓନାଲ୍ କଲେଜ୍ ଅଫ୍ ମ୍ୟାନେଜ୍‌ମେଣ୍ଟ୍‌ରେ ପର୍ଯ୍ୟଟନ ବିଭାଗରେ ସେ ବିଭାଗୀୟ ମୁଖ୍ୟ ଓ ପ୍ରଫେସର ଭାବରେ କାର୍ଯ୍ୟକରି ଆସୁଛନ୍ତି । ଏହାଛଡ଼ା ଅନ୍ୟ ଅନେକ ସଂସ୍ଥାର ସେ ଅଛନ୍ତି ଆଜୀବନ ସଭ୍ୟ କିମ୍ବା ସାମୟିକ ସଭ୍ୟ ଇତ୍ୟାଦି । ସବୁଠାରୁ ବଡ଼କଥା, ଅବସର ଗ୍ରହଣପରେ ସେ ଭୁବନେଶ୍ବରସ୍ଥିତ ନିଜ ବାସଭବନରେ ଗୋଟିଏ Post- Graduate coaching centre ସ୍ଥାପନ କରି ଉତ୍କଳ ବିଶ୍ବ ବିଦ୍ୟାଳୟର ଓଡ଼ିଆ ଏମ୍. ଏ. ପରୀକ୍ଷା ପାଇଁ ଛାତ୍ର—ଛାତ୍ରୀମାନଙ୍କୁ ପଢ଼ାଉଛନ୍ତି । ଏ ଅନୁଷ୍ଠାନ ଯେଉଁଭଳି ସୁନାମ ଅର୍ଜନ କରିଛି, ତାହା M. A. ପରୀକ୍ଷା ଦେଉଥିବା ବ୍ୟକ୍ତିମାନେ ଜାଣନ୍ତି । ଏଠାରେ ଜୁଲାଇରୁ ଏପ୍ରିଲ ମାସ ମଧ୍ୟରେ ( ଦଶମାସରେ ) କେବଳ ରବିବାରଦିନ ଅଧ୍ୟାପନା କରାଯାଏ ।

ସୁଣିଗୋଟି ରବିବାର ପ୍ରାୟ ପଚିଶ ଘଣ୍ଟା ପଢ଼ାଯାଏ । ଅର୍ଥାତ୍ ପ୍ରତିଦିନ ଘଣ୍ଟାଏ କାଳ ପଢ଼ା ଗଲାଭଳି ହିସାବ କରାଯାଇପାରେ । ଅଧ୍ୟାପକ ବ୍ରହ୍ମାଙ୍କ ଆଜୀବନ ଅଧ୍ୟାପନା କୌଶଳ, ବିରାଟ ପାଠାଗାର ପ୍ରତିଷ୍ଠା, ବହୁପୁସ୍ତକ ରଚନା, ବହୁ ସହସ୍ର ଭାଷାର ବିଷୟ ବସ୍ତୁ ଉପରେ ଆଧିପତ୍ୟ, ବହୁ କଠିନ ବିଷୟମାନଙ୍କୁ ବୁଝାଇବାର ଅପୂର୍ବ ଶକ୍ତି, ଦୃଢ଼ ସମୟାନୁ ବର୍ତ୍ତିତା, ପ୍ରତିଦିନ ପାଠ୍ୟ ଉପରେ ନୋଟ୍‌ଡ଼ାକ ଲିଖନ ଶକ୍ତି ବଢ଼ାଇବା କୌଶଳ, ମଝିରେ ମଝିରେ "ହୋମ୍ ଟାସ୍କ" ଦେଇ ଓ ପରୀକ୍ଷା କରି ଛାତ୍ରମାନଙ୍କର ମାନଦଣ୍ଡ ବର୍ଦ୍ଧନ ପ୍ରଚେଷ୍ଟା-ଏସବୁ ମିଳିତ ଭାବରେ ଅନୁଷ୍ଠାନଟିକୁ ଅପୂର୍ବ ଗୌରବ ମଣ୍ଡିତ କରି ରଖିଛୁ । ସମୟ କ୍ରମେ ଅନ୍ୟ ବିଷୟରେ ସେ M. A. ପାଠ୍ୟକ୍ରମ ପ୍ରବର୍ତ୍ତନ କରିବାକୁ ଚିନ୍ତା କରୁଛନ୍ତି । ତାଛଡ଼ା, ୧୯୩୯ରୁ ଆଜିପର୍ଯ୍ୟନ୍ତ ସଂସ୍କୃତ ଭାଷାର ନାନା ଶାସ୍ତ୍ର ଅଧ୍ୟୟନ, ଅନୁଶୀଳନ ଓ ଜ୍ଞାନ ଆହରଣ କରିବାରେ ବରାବର ଲାଗି ରହିଛନ୍ତି ।

## ବକ୍ତୃତାମୟ ଜୀବନ–

୧୯୪୫ରୁ ଆଜି ୧୯୮୫ ଶେଷପର୍ଯ୍ୟନ୍ତ ଅଧ୍ୟାପକ ବ୍ରହ୍ମା ଏକ "ବକ୍ତୃତାମୟ" ଜୀବନ ଯାପନ କରୁ ଅଛନ୍ତି । କୌଣସି ଏକ ନୂତନ ସ୍ଥାନରେ ବ୍ରହ୍ମାଙ୍କୁ ଯେ ଦେଖିଲା, ସେ ସଙ୍ଗେ ସଙ୍ଗେ ପଚାରିଲା, "ଆଜ୍ଞା ! ଆଜି ସନ୍ଧ୍ୟାରେ କେଉଁଠାରେ ଭାଷଣ ଅଛି ?" ସେ କିପରି ଭାବରେ ଏଭଳି ସୁଦକ୍ଷ ଓ ଜନପ୍ରିୟ ବକ୍ତା ହୋଇପାରିଲେ, ପଚାରିଲେ କହନ୍ତି—"ମୋ ପିତାହିଁ ମୋ ବାଗ୍ମିତାର ପ୍ରଥମ କାରଣ । ଚଣ୍ଡୀ ପାଠରେ ଦେବୀଙ୍କୁ ସନ୍ତୁଷ୍ଟ କରାଇ ସେ ମୋ ପାଇଁ ବାଗ୍ମିତା ଆଣି ଦେଇଥିଲେ । ମୋର ଶୈଶବରେ ମତେ ପୁରୀ ନେଇ ଜଗନ୍ନାଥଙ୍କ ଠାରେ ଓ ବିମଳାଙ୍କଠାରେ ଅର୍ପଣ କରିଦେଇଥିଲେ । ଦ୍ୱିତୀୟରେ, ଶ୍ୱଶୁର ଗୋଦାବରୀଶ ମହାପାତ୍ର, କଟକରେ ମୋର ବହୁ ଭାଷଣ ଶୁଣିବାପରେ କେଉଁଠାରେ ଭୁଲ୍ ଭଟକା ରହିଯାଉଛି, ତାହା ବାରମ୍ବାର ବୁଝାଇ ଦେଉଥିଲେ । ତୃତୀୟରେ, ୧୯୪୧ରୁ ୧୯୫୦ ମଧ୍ୟରେ

ପାଞ୍ଚଜଣ ବ୍ୟକ୍ତି ମୋ ଭାଷଣ ମଧ୍ୟ ଜୀବନ ଉପରେ ପ୍ରଭାବ ବିସ୍ତାର କରିଥିଲେ । ସେମାନେ ହେଉଛନ୍ତି ୰ ପଣ୍ଡିତ ଗୋଦାବରୀଶ ମିଶ୍ର, ୰ପଣ୍ଡିତ ନୀଳକଣ୍ଠ ଦାସ, ୰ ଯଦୁମଣି ମଙ୍ଗରାଜ, ବିଶ୍ୱରପଥ ହରିହର ମହାପାତ୍ର ଏବଂ ଶ୍ରୀଯୁକ୍ତ ମନ ମୋହନ ମିଶ୍ର । ସେମାନଙ୍କଠାରୁ ଭାଷଣ କୌଶଳ, ମୋ ଦୃଷ୍ଟିକୋଣରୁ, ମୁଁ ଶିଖିନେଇଛି ।"

ଗତ ପ୍ରାୟ ପଞ୍ଚିଶ୍ଳଶ ବର୍ଷ ମଧ୍ୟରେ ଅଧ୍ୟାପକ ବ୍ରହ୍ମା ପାଞ୍ଚହଜାରରୁ ଅଧିକ ଭାଷଣ ଦେଇଛନ୍ତି । ଏଥିରୁ ଅଧିକାଂଶ ଭାଷଣ ପ୍ରାୟ ଘଣ୍ଟାଘଣ୍ଟା ବ୍ୟାପିଥିଲା । ଲମ୍ବା ମାଲଗାଡ଼ିକୁ ଗୋଟିଏ ରେଲଇଞ୍ଜିନ୍ ଟାଣି ପାରିବ ନାହିଁ ବୋଲି ବେଳେବେଳେ ଦୁଇଟି ଇଞ୍ଜିନ୍ ଲଗାଯାଇଥାଏ । ଅଧ୍ୟା-ପକ ବ୍ରହ୍ମାଙ୍କର ଦୀର୍ଘ ଭାଷଣର ପ୍ରଖରତା ଲକ୍ଷ୍ୟକରି ତାଙ୍କୁ "ଡ଼ବଲ୍ ଇଞ୍ଜିନ୍ ବକ୍ତା" ବୋଲି କେହି କେହି କହିଥାଆନ୍ତି । କୌଣସି କବି ବା କାବ୍ୟ ଉପରେ ଅନ୍ୟମାନେ ଭାଷଣ ଦେଲାବେଳେ କେତେଗୁଡ଼ିଏ ମତ ଦିଅନ୍ତି । କିନ୍ତୁ ମତଗୁଡ଼ିକୁ ସତ୍ୟରୂପେ ପ୍ରତିପାଦନ କରିବା ପାଇଁ କବିଙ୍କ ରଚନାରୁ ଉଦ୍ଧୃତି ଦେଇନଥାନ୍ତି । ଉଦ୍ଧୃତି ଦେବାକୁ ହେଲେ ମାସ ମାସ ଧରି କାବ୍ୟର ଶ୍ରେଷ୍ଠ ଅଂଶଗୁଡ଼ିକୁ ମୁଖସ୍ଥ କରିବାକୁ ପଡ଼ିବ । ଏହା ଏକ କଠୋର ସାଧନା । ଏଥିପାଇଁ ଜନ୍ମଗତ ସ୍ମରଣଶକ୍ତି ଦରକାର, ସଂସାରର ଭଲମନ୍ଦ ଭୁଲିଯାଇ ମୁଖସ୍ଥ କରିବାକୁ ସଂକଳ୍ପ ଦରକାର । ପୁଣି, ଥରେ ମୁଖସ୍ଥ ହୋଇଥିବା ଅଂଶକୁ ମନ ଭିତରେ ଜାଗ୍ରତ ରଖିବା ପାଇଁ ବରା-ବର ଅଭ୍ୟାସ କରିବାକୁ ପଡ଼ିବ । ପିତାଙ୍କ ପ୍ରଭାବରୁ ଅଧ୍ୟାପକ ବ୍ରହ୍ମା ଆଜି ପର୍ଯ୍ୟନ୍ତ ଏପରି କରି ଆସିଛନ୍ତି । ତେଣୁ କେହି ଜଣେ କବିଙ୍କ ସଂପର୍କରେ ସେ ଯାହା ମତ ଦିଅନ୍ତି, ସେ ମତକୁ ପ୍ରମାଣ କରିବାକୁ ଯାଇ କବିଙ୍କ ଲେଖାରୁ ଗଣି ଗଣି ଅଂଶ ଆବୃତ୍ତି କରି ଥାଆନ୍ତି । ତାଙ୍କର କୋକିଳ କଣ୍ଠ, ଭାବବ୍ୟଞ୍ଜକ ମୁଖଭଙ୍ଗୀ, ଆବେଗଭରା ଆବୃତ୍ତି ଏବଂ ବାକ୍ୟମାନଙ୍କର ଅନର୍ଗଳ ପ୍ରବାହ ସହସ୍ର ସହସ୍ର ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରି ରଖେ । ବିମାୟଣ ଉପରେ କହିଲାବେଳେ ଆସାମୀ, ବଙ୍ଗଳା, ଓଡ଼ିଆ, ତେଲୁଗୁ, ତାମିଲ, କାନ୍ନାଡ଼ୀ, ମାଲୟାଲୀ, ମରାଠୀ, ଗୁଜୁରାଟୀ

ହିନ୍ଦୀ, ନେପାଳୀ, କାଶ୍ମୀରୀ, ଉର୍ଦ୍ଦୁ ଏବଂ ସଂସ୍କୃତ ଭାଷାର ରାମାୟଣ ଗ୍ରନ୍ଥମାନଙ୍କରୁ ସଙ୍ଗୀତମୟ ଭଙ୍ଗୀରେ ଆବୃତ୍ତି କରି ଶ୍ରୋତାମାନଙ୍କୁ ମୁଗ୍ଧ କରିଥାଆନ୍ତି । ଓଡ଼ିଶାର ସମସ୍ତ ବିଶିଷ୍ଟ ମହାବିଦ୍ୟାଳୟ, ତେର଼ଜିଲ୍ଲାର ଅସଂଖ୍ୟ ସାହିତ୍ୟ ସଭା, ଧର୍ମସଭା, ସଂସ୍କୃତ ସଭା, ବିଦ୍ୟାଳୟ ଏବଂ ମହାବିଦ୍ୟାଳୟର ସଭା. ବୈଷୟିକ ମହାବିଦ୍ୟାଳୟ, ବଙ୍ଗସମ୍ମିଳନୀ, ହିନ୍ଦୀ ସମ୍ମିଳନୀ ପ୍ରଭୃତିରେ ବିଭିନ୍ନ ବିଷୟରେ ହଜାର ହଜାର ଭାଷଣ ଦେଇଛନ୍ତି । ଋଷିଆ ଏବଂ ମାଙ୍ଗୋଲିଆ ଦେଶର କେତେକ ସ୍ଥାନ, କଲିକତା, ଗୌହାଟୀ, ଖଡ଼୍ଗପୁର, ଟାଟାନଗର, ବାରାଣସୀ, ଅଲ୍ଲାହାବାଦ, ଅଯୋଧ୍ୟା, ଚନ୍ଦ୍ରକୂଟ, ଆଗ୍ରା, ନୂଆଦିଲ୍ଲୀ, ହାଇଦ୍ରାବାଦ କେରଳର ଏର୍ଣ୍ଣାକୁଲମ୍, ବମ୍ବେ, ମହୀଶୂର, ବାଙ୍ଗାଲୋର, ମେଡ୍ରାସ୍ ପଣ୍ଡିଚେରୀ ପ୍ରଭୃତିରେ ଓଡ଼ିଆ, ସଂସ୍କୃତ, ଇଂରାଜୀ ଏବଂ ହିନ୍ଦୀରେ ଭାଷଣ ଦେଇ ଅତୁଳନୀୟ ଗୌରବ ଲାଭକରି ଅଛନ୍ତି । ବିଭିନ୍ନ ସଭାରେ ତାଙ୍କୁ ଦିଆଯାଇଥିବା ଗଣି ଗଣି ଅଭିନନ୍ଦନ ପତ୍ର ତାଙ୍କ ବାସଭବନରେ ଶୋଭାପାଉଛି ।

## ବକ୍ତୃତାର ବିଷୟ ବସ୍ତୁ-

ବକ୍ତୃତାର ବିଷୟ ବସ୍ତୁ ସଂପର୍କରେ ସେ କହନ୍ତି;— "ମୁଁ ବକ୍ତୃତା ଦେଇ ଦେଇ ତିନିଶହ ପଞ୍ଚଷଠିରୁ ଅଧିକ Topic (ବିଷୟ) ଠିକ୍ କରିଛି । ଏହାର ଅର୍ଥ, ପ୍ରତିଦିନ ସନ୍ଧ୍ୟାରେ ମୁଁ ଯଦି ଗୋଟିଏ Topic ଉପରେ ଦୁଇତିନି ଘଣ୍ଟା କହିବି, ତାହାହେଲେ ଗୋଟିଏ ବର୍ଷ ପୂରିବା ପର୍ଯ୍ୟନ୍ତ ପ୍ରତିଦିନ ନୂଆ ନୂଆ ବିଷୟ ଉପରେ ହିଁ କହିପାରିବି ।" ପ୍ରତ୍ୟେକ ବକ୍ତୃତା ପାଇଁ ଅଲଗା ଅଲଗା କବିତା ବା ପଦମାନ ମୋର ମୁଖସ୍ଥ ଅଛି । ତେଣୁ ତଥ୍ୟମାନଙ୍କୁ ରସ ପରିପ୍ଲୁତ କରି ସାଧାରଣ ଲୋକଙ୍କୁ ମଧ୍ୟ ଅନୁପ୍ରାଣିତ କରିବା ଦିଗରେ ଅସୁବିଧା ହେବନାହିଁ । ସାହିତ୍ୟ, ସଙ୍ଗୀତ, ଧର୍ମ, ଦର୍ଶନ, ଭାଷା, ସଭ୍ୟତା, ସଂସ୍କୃତି, ମନ୍ଦିର-କଳା, ଏବଂ ଓଡ଼ିଶା, ଭାରତ ତଥା ବିଶ୍ୱର ବହୁ ବିଶିଷ୍ଟ କବି ବା ଗ୍ରନ୍ଥ ଉପରେ ତାଙ୍କର ଭାଷଣମାନ ପ୍ରତିଷ୍ଠିତ ।

## ପାରିବାରିକ ଜୀବନ :-

ଅଧ୍ୟାପକ ବ୍ରହ୍ମାଙ୍କର ପାରିବାରିକ ଜୀବନ ତାଙ୍କର ସାଧନା ସଙ୍ଗେ ନିବିଡ଼ ଭାବରେ ସଂଯୁକ୍ତ । ପଣ୍ଡିତ ବ୍ରହ୍ମା ୧୯୪୨-୪୩ରେ ଶିକ୍ଷକ ପଦରୁ ଅବସର ଗ୍ରହଣକଲେ । କିନ୍ତୁ ୧୯୪୭ ପର୍ଯ୍ୟନ୍ତ ସେ ଆସିକା ସନ୍ନିକଟସ୍ଥିତ ସଂସ୍କୃତ ଟୋଲର ଶିକ୍ଷକ ରୂପେ କାର୍ଯ୍ୟ କଲେ । ଆସିକା ସହରରେ, ଖଣ୍ଡମୁଣ୍ଡେଶ୍ୱର ପାଟଣା ପାଖରେ ସେ ଗୋଟିଏ ଭଡ଼ାଘରେ ରହୁଥିଲେ । ଓଡ଼ିଶାର ସ୍ୱନାମଧନ୍ୟ କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ବର୍ତ୍ତମାନ ଯେଉଁ ଘରେ ରହୁଛନ୍ତି, ତାର ପୂର୍ବପଟକୁ ଲାଗିରହିଥିବା ଘରଟିରେ ପଣ୍ଡିତ ବ୍ରହ୍ମା ପ୍ରାୟ ପନ୍ଦରବର୍ଷ କାଳ ରହିଥିଲେ । ତାପରେ ସେ ଗଲେ ତାଙ୍କର ପରଶୁଲୁଣ୍ଡା ଗ୍ରାମକୁ । ସେଠାରେ କିନ୍ତୁ ଗ୍ରାମର ପରିସ୍ଥିତି ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠିଲା । ଗଞ୍ଜାମର ମହାଯଶସ୍ୱୀ ମହିଳା ତଥା ନାରୀକବି ଶ୍ରୀମତୀ ସୀତାଦେବୀ ଖାଡ଼ଙ୍ଗାଙ୍କର ଆର୍ଥିକ ସାହାଯ୍ୟ ପାଇ ସେ 'ଷଡ଼ଙ୍ଗୀପଲ୍ଲୀ'ରେ ଗୋଟିଏ ଜାଗା କିଣିଲେ ଏବଂ ଘରଟିଏ ନିର୍ମାଣକରି ରହିଲେ । ପରଶୁଲୁଣ୍ଡାରୁ ଷଡ଼ଙ୍ଗୀପଲ୍ଲୀ ଚାଲିଗଲେ ୧୯୪୯ ଖ୍ରୀଷ୍ଟାବ୍ଦରେ । ତାହାର ଦୁଇବର୍ଷ ପରେ ସେହି ଗ୍ରାମରେ, ଫେବୃଆରୀ ମାସ ୧୩ ତାରିଖ ମାଘମାସ ଭୀଷ୍ମାଷ୍ଟମୀ ଦିନ ତାଙ୍କର ପରଲୋକ ହୋଇଥିଲା । ସେ ଦିନ ଭଞ୍ଜନଗରରେ ଭଞ୍ଜଜୟନ୍ତୀ ଉତ୍ସବ ହେଉଥିଲା । ଓଡ଼ିଶାର ଶିକ୍ଷାମନ୍ତ୍ରୀ ତଥା ବିକାଶ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହିତ ଅଧ୍ୟାପକ ବ୍ରହ୍ମା ଭାଷଣ ଦେବାକୁ ଯାଇଥିଲେ । ସଭାମଞ୍ଚ ଉପରେ ପଣ୍ଡିତ ବ୍ରହ୍ମାଙ୍କର ସଙ୍କଟ ଅବସ୍ଥାର ଖବର ମିଳିବାରୁ ସଭାବନ୍ଦ କରାଗଲା ଏବଂ ଅଧ୍ୟାପକ ବ୍ରହ୍ମା ଷଡ଼ଙ୍ଗୀପଲ୍ଲୀ ଚାଲିଆସିଲେ । ସେଦିନ ରାତିର ଶେଷଭାଗରେ ପଣ୍ଡିତ ବ୍ରହ୍ମାଙ୍କର ଦେହାନ୍ତ ହୋଇଥିଲା । ତାହାପରେ ମଧ୍ୟ ଷଡ଼ଙ୍ଗୀ-ପଲ୍ଲୀରେ ପଣ୍ଡିତଙ୍କର ଦୁଇପୁତ୍ର ଶ୍ରୀମାନ୍ ସତ୍ୟକାମ ଏବଂ ଶ୍ରୀମାନ୍ ସଦାନନ୍ଦ ବିଧବା ମାତାଙ୍କ ସହିତ ରହୁଥିଲେ । ସେତେବେଳେ ଅଧ୍ୟାପକ ବ୍ରହ୍ମା ରେଭେନସା କଲେଜରେ ଅଧ୍ୟାପକ ଥିଲେ । ଅଧ୍ୟାପକ ବ୍ରହ୍ମାଙ୍କ ତଳଭାଇ ସତ୍ୟକାମ ଜଣେ ଆଶୁକବି । କିନ୍ତୁ ସେ ଥିଲେ ଆଜନ୍ମ ବାତ-

ରୋଗୀ । ୧୯୫୩ ଖ୍ରୀଷ୍ଟାବ୍ଦରେ ଶ୍ରାବଣ ପୂର୍ଣ୍ଣିମା ଦିନ ତାଙ୍କର ପରଲୋକ ହୋଇଗଲା । ତାଙ୍କ ଲିଖିତ ଅନେକ କବିତା ଏବଂ କେତୋଟି କାବ୍ୟ, ପୁସ୍ତକ ଆକାରରେ ପ୍ରକାଶିତ ହେବାର ଉଦ୍ୟମ କରାଯାଉଛି । ମୃତ୍ୟୁ ବେଳକୁ ତାଙ୍କର ବୟସ ହୋଇଥିଲା ମାତ୍ର ଚବିଶ ବର୍ଷ । ୧୯୨୯ରେ Tekkaliରେ ତାଙ୍କର ଜନ୍ମ ହୋଇଥିଲା । ତାଙ୍କ ମୃତ୍ୟୁପରେ ଅଧ୍ୟାପକ ବ୍ରହ୍ମା ଦୁଃଖରେ କେତେମାସ ପାଇଁ ଆଉ ଷଡ଼ଙ୍ଗୀପଲ୍ଲୀ ଗଲେନାହିଁ । ସେ ସମୟରେ ଖୋଲା ଆଲମାରୀରେ (Racks) ରହୁଥିବା ପଣ୍ଡିତ ବ୍ରହ୍ମାଙ୍କର ଶତାଧିକ ସଂସ୍କୃତ ଗ୍ରନ୍ଥ ନଷ୍ଟ ହୋଇଗଲା । ପୁଣି, ଦୁଇଟି ଆଲମାରୀ ଉଇ ଖାଇଗଲା । ତାହାପରେ ଅଧ୍ୟାପକ ବ୍ରହ୍ମା ଅବଶିଷ୍ଟ ବହିଗୁଡ଼ିକୁ ଜଳ-ପୁରକୁ କଟକ ନେଇଆସିଲେ ଓ ସେଗୁଡ଼ିକର ସଂରକ୍ଷଣ ଉପରେ ଦୃଷ୍ଟି ଦେଲେ । ସାନପୁଅ ସଦାନନ୍ଦ ଏବେ ଭଞ୍ଜନଗରରେ ସରକାରୀ ଚାକିରୀ କରନ୍ତି । କିନ୍ତୁ ଜ୍ୟୋତିଷ ବିଦ୍ୟାରେ ତାଙ୍କର ସାଧନା ବହୁଦୂର ବ୍ୟାପି-ଯାଇଛି । ବଡ଼ପୁଅ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଷଡ଼ଙ୍ଗୀପଲ୍ଲୀ ଏବଂ ପରଶୁଲୁଣ୍ଡାର ସମସ୍ତ ସଂପର୍କ ଛିନ୍ନକରି ଏବେ ଭୁବନେଶ୍ୱରରେ, ମାଉସୀ ମା ମନ୍ଦିର ନିକଟରେ, ଘରକରି ରହୁଛନ୍ତି । ପୈତୃକ ଘରଦ୍ୱାର, ଜମିବାଡ଼ି, ଗଛମାଛ ପ୍ରଭୃତି ସେ କିଛି ଆଶାକରୁ ନାହାନ୍ତି କିମ୍ବା ସେ ବିଷୟରେ ଚିନ୍ତାକରିବାକୁ ମଧ୍ୟ ପ୍ରସ୍ତୁତ ନୁହଁନ୍ତି । ଏ କ୍ଷେତ୍ରରେ ସାନଭାଇ ସଦାନନ୍ଦ ଅଧ୍ୟାପକ ବ୍ରହ୍ମାଙ୍କ ପନ୍ଥା ଅବଲମ୍ବନ କରିଛନ୍ତି ।

ଅଧ୍ୟାପକ ବ୍ରହ୍ମାଙ୍କର ତିନୋଟି ପୁଅ ଏବଂ ଦୁଇଟି ଝିଅ । ବଡ଼ପୁଅ ଶ୍ରୀମାନ୍ ଭବାନୀଶଙ୍କର ଜଣେ Automobile Engineer । କିନ୍ତୁ ପ୍ରାୟ ୨୫ବର୍ଷ ତଳୁ ସେ ଗୋଦାବରୀଶ ମହାପାତ୍ରଙ୍କର ଦତ୍ତପୁତ୍ର ଭାବରେ ଚାଲିଯାଇଛନ୍ତି । ଦ୍ୱିତୀୟ ସନ୍ତାନ ହେଉଛି ବ୍ରହ୍ମାଙ୍କ କନ୍ୟା କବିତା । ତାଙ୍କର ସ୍ୱାମୀ ଶ୍ରୀ ଶିବପ୍ରସାଦ ମିଶ୍ର ଓଡ଼ିଶା ସରକାରଙ୍କ ଜଣେ O.A.S. Officer । ତୃତୀୟ ସନ୍ତାନ ହେଉଛି ତାଙ୍କ କନ୍ୟା ମମତା । ସେ ବର୍ତ୍ତ-ମାନ ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପିକା ଭାବରେ କାର୍ଯ୍ୟ କରୁଛନ୍ତି । ତାଙ୍କର ସ୍ୱାମୀ ଶ୍ରୀ ଜୟନାରାୟଣ ସାମନ୍ତରାୟ,

ବର୍ତ୍ତମାନ Medical Representative ଅଛନ୍ତି । ଚତୁର୍ଥ ସନ୍ତାନ ତାଙ୍କର ପୁତ୍ର ଶିବକୁମାର । ୧୯୫୮ରେ ଭୁବନେଶ୍ୱରରେ ଜନ୍ମଲାଭ କରି ୧୯୭୭ ସେପ୍ଟେମ୍ବର ମାସ '୭ ତାରିଖରେ ଶ୍ରୀକ୍ଷେତ୍ରରେ ପ୍ରାଣତ୍ୟାଗ କରିଛନ୍ତି । ଦଶବର୍ଷ ବୟସରେ ତାଙ୍କୁ ଦୁରାରୋଗ୍ୟ Myopathy ରୋଗ ଆକ୍ରମଣ କରିଥିଲା ଏବଂ ସମସ୍ତ ଚିକିତ୍ସା ସତ୍ତ୍ୱେ ଠିକ୍ ଅଠରବର୍ଷ ପୂର୍ତ୍ତି ହେବା ସଙ୍ଗେ ସଙ୍ଗେ ତାଙ୍କର ଜୀବନ ଦୀପ ଲିଭିଯାଇଥିଲା । ରୂପବନ୍ତ, ଗୁଣବନ୍ତ ଏବଂ ବୁଦ୍ଧିମନ୍ତ ଏହି ପୁତ୍ରର ବିୟୋଗ ଦୁଃଖ ଅଧ୍ୟାପକ ବ୍ରହ୍ମାଙ୍କୁ ଦୁଇମାସ ଧରି ଶଯ୍ୟାଶାୟୀ କରିଦେଇଥିଲା । ସେ ଦିନଠାରୁ ବ୍ରହ୍ମାଙ୍କର ଧର୍ମପତ୍ନୀ ଶ୍ରୀମତୀ ସତ୍ୟଭାମା ଦେବୀଙ୍କର ମଧ୍ୟ ସ୍ୱାସ୍ଥ୍ୟଭଙ୍ଗ ଆରମ୍ଭ ହେଲା । ଅଧ୍ୟାପକ ବ୍ରହ୍ମା କହନ୍ତି, "ପୂର୍ବଜନ୍ମରେ ଏ ହତଭାଗା କାହାର ଶିଶୁପୁତ୍ରକୁ ହରିନେଇଥିଲା, ଯାହା ଫଳରେ ନ୍ୟାୟଦାତା ଜଗନ୍ନାଥ, ପୁଣିକୁ ଡାକି ନେଇ, ମୋ ଶିଶୁପୁତ୍ରକୁ ମୋ ଠାରୁ ଛଡ଼ାଇ ନେଇଥିଲେ । ଦେଖୁଦେଖୁ ନଅବର୍ଷ ପୂରିଗଲା କିନ୍ତୁ ଏଭଳି କୌଣସି ଦିନ ନାହିଁ, ଯେଉଁଦିନ ମୋର ପ୍ରାଣପ୍ରତିମ ଶିବକୁମାରର ସ୍ମୃତି, ମୋ ଆଖିରେ ଲୁହ ଆଣି ନ ଦେଇଛି । ତାହାର କେତେଗୁଡ଼ିଏ ଫୋଟୋ ମୁଁ ରଖିଛି । କିନ୍ତୁ, ଏ ପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ କୌଣସି ଫୋଟୋକୁ ଦୁଇମିନିଟ ଚାହିଁଦେବାକୁ ମୋର ଶକ୍ତିନାହିଁ । ପୁତ୍ରଶୋକ ପରେ ମୋର ଆଉ ଜୀବନଧରି ରହିବାର ଇଚ୍ଛା ନଥିଲା । ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ବି. ଡି. ଜଟ୍ଟି ମୋତେ ବାରମ୍ବାର ବୁଝାଇ ବୁଝାଇ ମୋ ହୃଦୟରୁ ମୋ ଅପଚିନ୍ତା ଦୂର କରିଦେଇଥିଲେ । ହୁଏତ ଏ କାର୍ଯ୍ୟ ତାଙ୍କଦ୍ୱାରା ସାଧିତ ହେବ ଏବଂ ମୋ ଶିବୁ ଚାଲିଯିବାପରେ ମଧ୍ୟ ମତେ ସେ ବଞ୍ଚାଇରଖିବେ, ଏକଥା ଜଗନ୍ନାଥ ମହାପ୍ରଭୁ ଆଗରୁ ଜାଣିଥିବାରୁ, ଶ୍ରୀଯୁକ୍ତ ଜଟ୍ଟି ଓଡ଼ିଶାର ରାଜ୍ୟପାଳ ଥିଲାବେଳେ ମୋଠାରେ ତାଙ୍କର ଗଭୀର ଶ୍ରଦ୍ଧା ଜନ୍ମାଇ ଦେଇଥିଲେ । ଅବସର ଗ୍ରହଣପରେ ମୋ ଶିବୁର ଯତ୍‌ସାମାନ୍ୟ ସ୍ମୃତିପାଇଁ ମୁଁ ମୋ ବାସ-ଭବନରେ "ଶିବକୁମାର ପି. ଜି. କୋଚିଙ୍ଗ୍ ସେଣ୍ଟର" ପ୍ରତିଷ୍ଠା କରିଅଛି ।"

ଅଧ୍ୟାପକ ବ୍ରହ୍ମାଙ୍କର ପଞ୍ଚମ ସନ୍ତାନ— ଶ୍ରୀ ଦେବକୁମାର ବ୍ରହ୍ମା ।

ଉତ୍କଳ ବିଶ୍ୱବିଦ୍ୟାଳୟରୁ M. A., L.L. B. ପାସ କରିଛନ୍ତି । ନାଟ୍ୟ ନିର୍ଦ୍ଦେଶନା, ଅଭିନୟ ଏବଂ ହାସ୍ୟରସ ପରିବେଷକ ଭାବରେ ଶତାଧିକ ପୁରସ୍କାର ପାଇଛନ୍ତି । ଗତ ତିନିବର୍ଷ ମଧ୍ୟରେ ଓଡ଼ିଶାର କେତେକ ଚଳଚିତ୍ରରେ, ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହୋଇ "ଦେବୁ ବ୍ରହ୍ମା" ଭାବରେ ପରିଚିତ ହୋଇଛନ୍ତି । ଏବେ ୧୯୮୫ ଡିସେମ୍ବର ମାସରେ ବିଦୁଷୀ ରତ୍ନପ୍ରଭାଙ୍କୁ ବିବାହ କରିଅଛନ୍ତି ।

ଅଧ୍ୟାପକ ବ୍ରହ୍ମାଙ୍କର ଜମିବାଡ଼ି କଥା ପଚାରିଲେ, ପୁରୀ ସ୍ୱର୍ଗଦ୍ୱାର ଆଡ଼କୁ ଦେଖାଇଦିଅନ୍ତି । ଜଗନ୍ନାଥଙ୍କଠାରେ ତାଙ୍କର ଅଚଳାଭକ୍ତି । ଆଜି ମଧ୍ୟ ତାଙ୍କରି କୃପାରୁ ସେ ଶହ ଶହ ମାଇଲ ଭ୍ରମଣ କରିପାରୁଛନ୍ତି, ଘଣ୍ଟା ଘଣ୍ଟା ଧରି ଭାଷଣ ଦେଇପାରୁଛନ୍ତି. ଯୁବକ ଗାୟକ ପରି ଗାନକରି ପାରୁଛନ୍ତି ଏବଂ ଅଭାବ ଅସୁବିଧା ପଡ଼ିଲେ, ଅଶ୍ରୁଭରା ନୟନରେ କେବଳ ଜଗନ୍ନାଥଙ୍କ ଛବିର ଦୁଇଆଖିକୁ ଚାହିଁଦିଅନ୍ତି ।

ଅଧ୍ୟାପକ ବ୍ରହ୍ମାଙ୍କର ପିତାଙ୍କର ଜୀବନୀ "ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା" ନାମକ ପୁସ୍ତକରେ ଲିପିବଦ୍ଧ ହୋଇଅଛି । ତହିଁରେ ସୁପ୍ରସିଦ୍ଧ ଗବେଷକ ଓ ଜଗନ୍ନାଥ-ଭକ୍ତ ପଦ୍ମଶ୍ରୀ ସଦାଶିବ ରଥ ଶର୍ମାଙ୍କର ଗୋଟିଏ ଲେଖା ସ୍ଥାନପାଇଛି । ତହିଁରୁ ଜଣାଯାଏ, ଜଗନ୍ନାଥ ମହାପ୍ରଭୁଙ୍କର କୃପା ଲାଭକରି, ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଭାରତର କେତେକ ପଣ୍ଡିତଙ୍କୁ ପୁରୀରେ ପରାସ୍ତ କରିଥିଲେ । ସେହି ପଣ୍ଡିତମାନେ ଯୁକ୍ତି କରୁଥିଲେ ଯେ ପୁରୀ ମନ୍ଦିରର "ମହାପ୍ରସାଦ" କୁକୁରଙ୍କାଠାରୁ ଯିବ ଯେପରି କି ଏକ କଳଙ୍କ । ସେମାନଙ୍କୁ ଶାସ୍ତ୍ରଚର୍ଚ୍ଚାରେ ପରାଜିତ କରି, ପଣ୍ଡିତ ବ୍ରହ୍ମା ଗଜପତି ମହାରାଜାଙ୍କ ପକ୍ଷରୁ ଓ ଶ୍ରୀମନ୍ଦିର ପକ୍ଷରୁ ମଧ୍ୟ ସମ୍ବର୍ଦ୍ଧନା ପାଇଥିଲେ । ଏଭଳି ଘଟଣାରୁ ଜଣାଯାଏ ଯେ, ଜଗନ୍ନାଥ ମହାପ୍ରଭୁଙ୍କର ପଣ୍ଡିତ ବ୍ରହ୍ମା ନିଶ୍ଚିତ ଭାବରେ କୃପାପାତ୍ରଥିଲେ । ତାଙ୍କ ପୁଅଙ୍କ ପ୍ରତି ଜଗନ୍ନାଥଙ୍କ କରୁଣା ରହିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ।

# ସାହିତ୍ୟ ସାଧନାର ଉତ୍ସ ଓ ଉଦ୍‌ବୋଧନ :—

ଅଧ୍ୟାପକ ତ୍ରହ୍ମା ୧୯୪୦ରୁ ଆଜି ପର୍ଯ୍ୟନ୍ତ ପତ୍ରପତ୍ରିକାମାନଙ୍କରେ ଆଲୋଚନାତ୍ମକ ପ୍ରବନ୍ଧମାନ ଲେଖି ଆସୁଛନ୍ତି । ତାଙ୍କର ସାହିତ୍ୟ ସୃଷ୍ଟି ମୂଳରେ ଯେଉଁମାନଙ୍କର ପ୍ରେରଣା ରହିଅଛି, ସେମାନେ ହେଉଛନ୍ତି ତାଙ୍କର ପୂଜନୀୟ ପିତୃଦେବ, ଶ୍ୱଶୁର ଗୋଦାବରୀଶ ମହାପାତ୍ର, ସାହିତ୍ୟିକ ବାଳକୃଷ୍ଣ କର, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ, ଅଧ୍ୟାପକ ବିପିନବିହାରୀ ରାୟ, ଅଧ୍ୟାପକ ରତ୍ନାକର ପତି, କଲିକତାର ଡକ୍ଟର ସୁନୀତି କୁମାର ଚାଟାର୍ଜି, ଅଧ୍ୟାପକ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଇତିହାସ ଅଧ୍ୟାପକ ଘନଶ୍ୟାମ ଦାଶ, ମହାଜ୍ୟୋତିଷୀ ବାଇକୋଳି ମହାପାତ୍ର, କୁଳପତି ଚନ୍ଦ୍ରମଣି ଆଚାର୍ଯ୍ୟ, କୁଳପତି ପରଶୁରାମ ମିଶ୍ର, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଡକ୍ଟର ରାଧାନାଥ ରଥ, ଡକ୍ଟର ହରେକୃଷ୍ଣ ମହତାବ, ଔପନ୍ୟାସିକ ରାଜକିଶୋର ପଟ୍ଟନାୟକ, ଶ୍ରୀମତୀ ସରଳା ଦେବୀ, କବିରାଜ ମିହିର କୁମାର ପାଣିଗ୍ରାହୀ, ଆଡ୍‌ଭୋକେଟ୍ ମୁରାରି ପ୍ରସାଦ ମିଶ୍ର (ସମ୍ବଲପୁର), ଶ୍ରୀଯୁକ୍ତ ପ୍ରତାପ କେଶରୀ ଦେଓ (କଳାହାଣ୍ଡି), ଏମାର୍ ମଠ ମହନ୍ତ ମହାରାଜ ଶ୍ରୀ ଶ୍ରୀନିବାସ ରାମାନୁଜ ଦାସ, ଶ୍ରୀ ପ୍ରାଣନାଥ ପଟ୍ଟନାୟକ I. A. S , ବିମଳ କିଶୋର ମିଶ୍ର I. A. S., ପ୍ରମୁଖ । ପ୍ରବୀଣ ସହକର୍ମୀଙ୍କ ମଧ୍ୟରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ, ଡକ୍ଟର ମନ୍ମଥନାଥ ଦାସ ଓ ଅନ୍ୟ ଅନେକ ବିଦଗ୍ଧ ବନ୍ଧୁ । ଏ ସମସ୍ତଙ୍କ ସହିତ ଅଧ୍ୟାପକ ତ୍ରହ୍ମାଙ୍କର ଘନିଷ୍ଠ ସମ୍ପର୍କ ଥିବା ସେ ବରାବର କହିଥାଆନ୍ତି । ବେଳେ ବେଳେ କହନ୍ତି, "ମୁଁ ଯଦି ମୋର ଆତ୍ମଜୀବନୀ ଲେଖିବାକୁ ସମର୍ଥ ହେବି, ତାହାହେଲେ, କେଉଁ ବିଶିଷ୍ଟ ସାହିତ୍ୟିକଙ୍କଠାରୁ ପ୍ରେରଣା ପାଇ ମୁଁ କେଉଁ ପ୍ରବନ୍ଧ ଲେଖିଥିଲି ଅଥବା କେଉଁ ପୁସ୍ତକ ରଚନା କରିଥିଲି, ତାହା ଗୋଟି ଗୋଟି କରି ବୁଝାଇଦେବି ।"

# ଅଧ୍ୟାପକ ବ୍ରହ୍ମାଙ୍କ ପ୍ରକାଶିତ ରଚନାବଳୀ :

ଏ ସମ୍ପର୍କରେ ତଳଲିଖିତ କେତୋଟି କଥା ସ୍ମରଣୀୟ :—

(୧) ୧୯୪୦ରୁ ଆଜିପର୍ଯ୍ୟନ୍ତ ଦୀର୍ଘ ପଞ୍ଚଚାଳିଶ ବର୍ଷଧରି ଅଧ୍ୟାପକ ବ୍ରହ୍ମା ଓଡ଼ିଆରେ ଏବଂ ଇଂରାଜୀରେ ପ୍ରବନ୍ଧମାନ ଲେଖି ଆସୁଛନ୍ତି । ସହକାର, ନବଭାରତ, ଉତ୍କଳ ସାହିତ୍ୟ, ଝଙ୍କାର, ଚତୁରଙ୍ଗ ଢଙ୍ଗ, ବୀଣା, ଉତ୍କଳ ପ୍ରସଙ୍ଗ, ପ୍ରଭାତୀ, ଡଗର ପ୍ରଭୃତି ପ୍ରାୟ କୋଡ଼ିଏ-ତିରିଶଟି ସାହିତ୍ୟ ପତ୍ରିକାରେ ତାଙ୍କର ଲେଖାମାନ ପ୍ରକାଶିତ ହୋଇଅଛି । ପ୍ରାୟ ପଚିଶଟି ଇଂରାଜୀ ପ୍ରବନ୍ଧ ବିଭିନ୍ନ ସ୍ମରଣିକାରେ, ଇଂରାଜୀ ଦୈନିକରେ, ଭାରତର ବିଭିନ୍ନ ପର୍ଯ୍ୟଟନ ପତ୍ରିକାରେ, ଭାରତ ସରକାରଙ୍କ ଶିକ୍ଷା ବିଭାଗର ମୁଖପତ୍ରରେ ଓ ରେଳ ବିଭାଗର ମୁଖପତ୍ରରେ, ଜ୍ଞାନକୋଷରେ, କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଇଂରାଜୀ ପତ୍ରିକାରେ, ଏସିଆ ମହାଦେଶର କଏ କ'ଣ ଗ୍ରନ୍ଥରେ ଏବଂ ସାମୟିକ ଭାବରେ ପ୍ରକାଶିତ କେତେକ ପତ୍ରିକାରେ ଏବଂ ଓଡ଼ିଶା ରିଭ୍ୟୁରେ ପ୍ରକାଶ ପାଇଅଛି । କିନ୍ତୁ ସେଗୁଡ଼ିକ ପୁସ୍ତକ ଆକାରରେ ଏପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ ।

(୨) ତଳେ ତାଙ୍କର ଯେଉଁ ପୁସ୍ତକ ତାଲିକା ଦିଆଯାଉଛି, ସେଗୁଡ଼ିକ ପ୍ରକାଶିତ ହୋଇଅଛି ବା ଯନ୍ତ୍ରସ୍ଥ ଅଛି । କିନ୍ତୁ ତାଙ୍କର ଆହୁରି ଅନେକ ପୁସ୍ତକ ପାଣ୍ଡୁଲିପି ଆକାରରେ ଅଛି, ଯାହା ପ୍ରକାଶ କରିବା ପାଇଁ ସେ ବର୍ତ୍ତମାନ ଚିନ୍ତା କରୁଛନ୍ତି । "ଆପଣଙ୍କ ପୁସ୍ତକ ନେବାପାଇଁ ପ୍ରକାଶକ ମିଳୁନାହାନ୍ତି କି" ବୋଲି ତାଙ୍କୁ ପଚାରିଲେ, ସେ କହନ୍ତି—"ବାସି ଭାତ ଫିଙ୍ଗିଲେ ମଧ୍ୟ ଖାଇବାକୁ କୁଆର ଅଭାବ ଘଟେନାହିଁ । ଆଉ ସଜ ଖିରି, ଖେଚୁଡ଼ି ପକାଇଦେଲେ କୁଆର କ'ଣ ଅଭାବ ଘଟିବ ?" । ଏ ସମ୍ପର୍କରେ ସେ ପୁଣି କହନ୍ତି—"ଆପଣ ଯଦି ପୂର୍ବଜନ୍ମରେ କାହାଠାରେ ଧାରୁଆ ହୋଇ ନଥାନ୍ତି, ତାହାହେଲେ ଏ ଜନ୍ମରେ ପୁସ୍ତକ ଲେଖି କୌଣସି ପ୍ରକାଶକଙ୍କ ଦ୍ୱାରସ୍ଥ ହୁଅନ୍ତେ ନାହିଁ । ଅନ୍ୟମାନଙ୍କୁ ଆମ ପୁସ୍ତକ ଛାପିବାକୁ ଦେଲେ ସେମାନେ ଆମର ନ୍ୟାଯ୍ୟ ପାଉଣାତକ କେତେ ପରିମାଣରେ ଦିଅନ୍ତି, କେଉଁ ଦିନରେ ଦିଅନ୍ତି ଏବଂ କିପରି ଭାବରେ ଦିଅନ୍ତି, ଅନୁଭବରେ ନ ଆସିଥିଲେ ଆପଣ ସେ କଥା କଳ୍ପନା ମଧ୍ୟ କରିପାରିବେ ନାହିଁ ।

ତା ଛଡ଼ା, ଆମେ ନିଜେ ପୁସ୍ତକ ଲେଖି ତାକୁ ଯଦି ନିଜ ଖର୍ଚ୍ଚରେ ପ୍ରକାଶ କରିବା, ତେବେ ମଧ୍ୟ ରକ୍ଷା ନାହିଁ । କାରଣ, ବହି ବିକ୍ରି କରିବା ପାଇଁ କୌଣସି ବହି ଦୋକାନରେ ପହଞ୍ଚିଲେ, ବହିତକ ବିକ୍ରି ହୋଇଯିବ, ସତ, କିନ୍ତୁ ଆପଣଙ୍କ ହାତକୁ ଗୋଟିଏ ଟଙ୍କା ଆସିଲା ବେଳକୁ ଆପଣଙ୍କର ଦେଢ଼ଟଙ୍କା ଖର୍ଚ୍ଚ ହୋଇ ଯାଇଥିବ । ବହୁସ୍ଥାନରେ ଆପଣ ବାରମ୍ବାର ଧାଇଁ ଧାଇଁ ମଧ୍ୟ ଟଙ୍କାଟିଏ ପାଇପାରିବେ ନାହିଁ । ତେବେ କେତେଗୁଡ଼ିଏ ବହି ବର୍ତ୍ତମାନ ଯନ୍ତ୍ରସ୍ଥ ।”

(୮) ଅଧ୍ୟାପକ ତ୍ରିପାଠୀଙ୍କର ବହିଗୁଡ଼ିକୁ ତଳଲିଖିତ ଭାବରେ ବିଭକ୍ତ କରାଯାଇପାରେ—

(କ) ଶିଶୁ ସାହିତ୍ୟ (ଖ) ସାହିତ୍ୟ ସମାଲୋଚନା (ଗ) ପ୍ରବନ୍ଧ ସାହିତ୍ୟ (ଘ) ପ୍ରାଚୀନ ଓଡ଼ିଆ ଗ୍ରନ୍ଥର ସମ୍ପାଦନା (ଙ) ପ୍ରାଚୀନ ଓଡ଼ିଆ କାବ୍ୟ ଉପରେ ଟୀକା (ଚ) ହିନ୍ଦୀରୁ ଅନୁବାଦ (ଛ) ବଙ୍ଗଳାରୁ ଅନୁବାଦ (ଜ) ହିନ୍ଦୀ ଭାଷାରେ ପୁସ୍ତକ (ଝ) ଇଂରାଜୀରେ ପୁସ୍ତକ (ଞ) ଧର୍ମ ଓ ଦର୍ଶନ ଉପରେ ପୁସ୍ତକ (ଟ) ପର୍ଯ୍ୟଟନ ସାହିତ୍ୟ (ଠ) ଓଡ଼ିଆ ସାହିତ୍ୟର ଇତିହାସ (ଡ଼) ଅଳଂକାର ସାହିତ୍ୟ (ଢ଼) ବିବିଧ ରଚନା (ଣ) ସଂସ୍କୃତ ରଚନା । ଏହାଛଡ଼ା ଯନ୍ତ୍ରସ୍ଥ ଥିବା କେତେକ ପୁସ୍ତକର ନାମ ମଧ୍ୟ ଦିଆଯାଇଛି ।

## ପୁସ୍ତକମାନଙ୍କର ପରିଚୟ—

ଏଠାରେ ପୁସ୍ତକର ନାମ, ବନ୍ଧନୀ ଭିତରେ ପ୍ରକାଶନର ବର୍ଷ ଏବଂ ପୁସ୍ତକର ସ୍ୱରୂପ ସମ୍ପର୍କରେ ସୂଚନା ମାତ୍ର ଦିଆଯାଉଛି :—

୧- ପାଠ ପ୍ରଭାତ (୧୯୪୨) ଶିଶୁମାନଙ୍କର ପାଠ୍ୟପୁସ୍ତକ ଭାବରେ ଲିଖିତ ହୋଇଥିଲା ।

୨- ଚିଲିକା ବିଚାର (୧୯୪୭) ଖ୍ରୀଷ୍ଟ କଲେଜର ଅଧ୍ୟାପକ ଭାବରେ ଚିଲିକା ପଢ଼ାଇବା ବେଳେ ଛାତ୍ରମାନଙ୍କୁ ଦୃଷ୍ଟିରେ ରଖି ଚିଲିକାର ଏହି ସମୀକ୍ଷା ରଚିତ ହୋଇଥିଲା । ଏକାଧିକ ସଂସ୍କରଣ ହୋଇଛି ।

୩- ଅଲଙ୍କାର ସାହିତ୍ୟର କ୍ରମବିକାଶ (୧୯୪୮) ଏହା ପ୍ରାୟ ତିନିବର୍ଷ ଆଗରୁ ଲିଖିତ ହୋଇଥିଲେ ମଧ୍ୟ ୧୯୪୮ରେ ପ୍ରକାଶିତ ହୋଇଥିଲା । ସଂସ୍କୃତ

ଗ୍ରନ୍ଥମାନଙ୍କ ଉପରେ ଲିଖିତ ଇଂରାଜୀ ଗ୍ରନ୍ଥମାନଙ୍କ ସାହାଯ୍ୟରେ ଏହା ଲିଖିତ ।

୪- ତପସ୍ୱିନୀ ଓ ମେହେର ସାହିତ୍ୟ (୧୯୪୮) ଖ୍ରୀଷ୍ଟ କଲେଜରେ ଗଙ୍ଗାଧର ମେହେରଙ୍କ ତପସ୍ୱିନୀ କାବ୍ୟ ପଢ଼ାଇ ପଢ଼ାଇ ତାହାର ରସ ଆସ୍ୱାଦନରେ ବିମୁଗ୍ଧ ହେବା ଅବସ୍ଥାରେ ଏହା ରଚିତ । ମେହେରଙ୍କର ଯେ କୌଣସି ଗୋଟିଏ କାବ୍ୟ ଉପରେ ଏହା ହେଉଛି ପ୍ରଥମ ବିଶାଳକାୟ ସମାଲୋଚନା । ଏ ପର୍ଯ୍ୟନ୍ତ ଏହାର ଆଦର ଅତୁଟ ରହିଅଛି । ଏହାର ଏକାଧିକ ସଂସ୍କରଣ ହୋଇଯାଇଛି ।

୫- ରସକଲ୍ଲୋଳ ସମୀକ୍ଷା (୧୯୫୧) ରେଭେନ୍‌ସା କଲେଜକୁ ଆସିବା ପରେ ପରେ କବି ଦୀନକୃଷ୍ଣଙ୍କ ବିଖ୍ୟାତ ରସକଲ୍ଲୋଳ କାବ୍ୟର ଏ ସମାଲୋଚନା ଲିଖିତ ହୋଇଥିଲା । ଏହାର ଦ୍ୱିତୀୟ ସଂସ୍କରଣରେ ଅନେକ ନୂତନତଥ୍ୟ ସମାବେଶିତ ।

୬- ପ୍ରଣୟ ବଲ୍ଲରୀ ପ୍ରବେଶ (୧୯୫୧) ରେଭେନ୍‌ସା କଲେଜରେ ଥିବାବେଳେ ଗଙ୍ଗାଧର ମେହେରଙ୍କ ପ୍ରଣୟ ବଲ୍ଲରୀ ଉପରେ ଏହା ରଚିତ ।

୭- ବଜାର ବୋଲି ଟୀକା (୧୯୫୨) କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କ୍ଷୁଦ୍ର ରଚନା 'ବଜାରବୋଲି' ଉପରେ ଏହା ପ୍ରଥମ ପ୍ରାଞ୍ଜଳ ଟୀକା । ବଜାରରେ ବସି ବିକୁଥିବା ନାରୀମାନଙ୍କ ସହିତ ଗ୍ରାହକମାନେ କଥାବାର୍ତ୍ତା ହେଲାବେଳେ ସେମାନଙ୍କ କଥାରୁ କିପରି ଦୁଇ ଦୁଇଟି ଅର୍ଥ ପ୍ରକାଶ ପାଉଥିଲା, ଏ ଟୀକାରେ ଦେଖାଇ ଦିଆଯାଇଛି । ଗୋଟିଏ ପ୍ରେମମୂଳକ ଗୂଢ଼ ଅର୍ଥ ଏବଂ ଅନ୍ୟଟି ସାଧାରଣ ବାହ୍ୟ ଅର୍ଥ ।

୮- ଭକ୍ତଚରଣ ଓ ମଥୁରା ମଙ୍ଗଳ (୧୯୫୬)
ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ବିଖ୍ୟାତ ମଥୁରା ମଙ୍ଗଳ ପଢ଼ାଇବା ଅନୁଭୂତି ଉପରେ ଏ ସମୀକ୍ଷା ରଚିତ । ଏଥିରେ କେତେକ ଅତ୍ୟନ୍ତ ନୂତନ କଥା ଅଛି, ଯେପରିକି, ମଥୁରାମଙ୍ଗଳ ଉପରେ

ରସକଲ୍ଲୋଳ କାବ୍ୟର ତତ୍ତ୍ୱ । ଏହାର ଗୋଟିଏ ଅଧ୍ୟାୟ ଦୈନିକ 'ସମାଜ'ରେ ପ୍ରକାଶିତ ହୋଇ ଆଲୋଡ଼ନ ସୃଷ୍ଟି କରିଥିଲା ।

୯- ଅଭିମନ୍ୟୁ ସାମନ୍ତ ସିଂହାର (୧୯୫୨)
ଗୌଡ଼ୀୟ ବୈଷ୍ଣବ ଭକ୍ତ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ସୁବିଖ୍ୟାତ ମହାକାବ୍ୟ 'ବିଦଗ୍ଧ ଚିନ୍ତାମଣି'ର ଏକ ତାତ୍ତ୍ୱିକ ଭୂମିକା ଭାବରେ ଏ ପୁସ୍ତକର ପ୍ରଥମ ଭାଗ ରଚିତ ହୋଇଥିଲା । ଦ୍ୱିତୀୟ ଭାଗ ଆରମ୍ଭ କଲାବେଳକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସମ୍ପାଦକ ଭାବରେ ନିଯୁକ୍ତି ପାଇ ଭୟଙ୍କର କର୍ମବ୍ୟସ୍ତ ରହିବାରୁ ଅଧିକ କିଛି ଲେଖାଯାଇ ପାରିଲା ନାହିଁ । ତେବେ, ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗର କେତେକାଂଶ ପ୍ରକାଶନ ପାଇଁ ବର୍ତ୍ତମାନ ପ୍ରସ୍ତୁତ ଅଛି । ପ୍ରାୟ ଦୁଇଶହ ପୃଷ୍ଠାର ଏ ବହି ନିକଟରେ ପ୍ରକାଶିତ ହେବାର ଆଶା ।

୧୦- ଲେଖା ଓ ଲେଖକ (୧୯୫୩) ଦୈନିକ 'ସମାଜ' ଏବଂ ଅନ୍ୟାନ୍ୟ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିବା କେତୋଟି ସାହିତ୍ୟିକ ଆଲୋଚନାର ସମଷ୍ଟି । ସ୍ୱାର୍ତ୍ତି ସାରଳା ଦାସ, ବିପ୍ଳବୀ ଉପେନ୍ଦ୍ର ଭଞ୍ଜ ଇତ୍ୟାଦି ଇତ୍ୟାଦି ପ୍ରବନ୍ଧମାନ ଏଥିରେ ସନ୍ନିବେଶିତ ।

୧୧- କୁସୁମାଞ୍ଜଳି ଆଲୋଚନା (୧୯୫୩)
ଭକ୍ତକବି ମଧୁସୂଦନଙ୍କ ଗୀତିଗୁଚ୍ଛ 'କୁସୁମାଞ୍ଜଳି' କଲେଜରେ ପଢ଼ାଇବା ବେଳେ ଏ ସମୀକ୍ଷା ଲିଖିତ ହୋଇଥିଲା । କେତୋଟି ଦାର୍ଶନିକ ଅଭିମୁଖ୍ୟ ଅଭିନବ ଭଙ୍ଗୀରେ ଏଥିରେ ଆଲୋଚିତ ।

୧୨- ବିଜ୍ଞାନଯୁଗରେ ଈଶ୍ୱର (୧୯୫୪) ଆଧୁନିକ ଯୁଗରେ ଜଡ଼ବିଜ୍ଞାନର ପ୍ରବଳ ଉନ୍ନତି ସତ୍ତ୍ୱେ ଆଦିମଯୁଗର ଈଶ୍ୱର ବିଶ୍ୱାସ ଲୋପପାଇ ନାହିଁ । ଏହା ସହିତ ଭାଗ୍ୟବାଦ ଓ କର୍ମବାଦ ମଧ୍ୟ ବିଜଡ଼ିତ । ଏ ସବୁ ବିଷୟରେ ତାତ୍ତ୍ୱିକ ଆଲୋଚନା ଏ ପୁସ୍ତକରେ କରାଯାଇଛି । ହିନ୍ଦୀ ଅନୁବାଦ ଚାଲିଛି ।

୧୩- ବିଦଗ୍ଧ ଚିନ୍ତାମଣି (ପ୍ରଥମ ଖଣ୍ଡ) (୧୯୫୪)
ମହାକବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣିର କେତେ-

ଗୋଟି ମୂଳବାଚକ ଗ୍ରନ୍ଥର ମୂଳ ଏବଂ ଅଣ ପ୍ରାଞ୍ଜଳ ଟୀକା ଏଥିରେ ଦିଆଯାଇଛି । ଏହାର ଏକ ପରିବର୍ଦ୍ଧିତ ସଂସ୍କରଣ ଏବେ ଯନ୍ତ୍ରସ୍ଥ ।

୧୪- ଉପେନ୍ଦ୍ର ଭଞ୍ଜ (୧୯୫୪) ଭଞ୍ଜ ଜୟନ୍ତୀ ଅବକାଶରେ ଅନେକ ବକ୍ତା ଓ ଶ୍ରୋତା ଭଞ୍ଜଙ୍କ ଜୀବନୀ ଜାଣିବାକୁ ଇଚ୍ଛୁକ ଥାଆନ୍ତି । ଭଞ୍ଜଙ୍କ ଜୀବନୀମୂଳକ ଏ ପୁସ୍ତିକା ସେଥିପାଇଁ ଉଦ୍ଦିଷ୍ଟ ।

୧୫- ସମସ୍ୟା ଓ ସମାଧାନ (୧୯୫୪) ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅନେକ ବିବଦମାନ ବିଷୟ ଏଥିରେ ଆଲୋଚିତ ହୋଇଅଛି, ଯଥା— କେଉଁ କେଉଁ ମାସକୁ ନେଇ କେଉଁ କେଉଁ ଋତୁ ହୁଏ । ବ୍ରାହ୍ମଣଙ୍କ ଉପାଧିରେ 'ଦାସ' ଠିକ କିମ୍ବା 'ଦାଶ' ଠିକ ଇତ୍ୟାଦି ଇତ୍ୟାଦି ।

୧୬- ସଂସ୍କୃତି ଓ ସାହିତ୍ୟ (୧୯୫୫) ଏଥିରେ ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅନେକ ଗୁଡ଼ିଏ ପ୍ରବନ୍ଧ ସମାବେଶିତ ହୋଇଛି । ଜଣାଯାଇଛି ଯେ, କଲିକତା ବିଶ୍ୱବିଦ୍ୟାଳୟରେ ଏହା କଲେଜ ପାଠ୍ୟରୂପେ ନିର୍ବାଚିତ ହୋଇଥିଲା ।

୧୭- ଓଡ଼ିଆ ବ୍ୟାକରଣ (୧୯୫୭) ଅଧ୍ୟାପକ ବ୍ରହ୍ମା ଓ ଶ୍ରୀ ଧନେଶ୍ୱର ମହାପାତ୍ର ମିଳିତ ଭାବରେ ସ୍କୁଲ ପାଠ୍ୟରୂପେ ଏହି ବ୍ୟାକରଣ ଲେଖିଥିଲେ । ଅନେକ ବର୍ଷ ଧରି ଏହା ପାଠ୍ୟରୂପେ ନିର୍ବାଚିତ ଥିଲା ।

୧୮- ଭଗବାନ୍ ବୁଦ୍ଧ (୧୯୫୮) କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପକ୍ଷରୁ "ଭଗବାନ ବୁଦ୍ଧ" ନାମକ ଗୌତମ ବୁଦ୍ଧଙ୍କ ଜୀବନୀ ସମ୍ପର୍କୀୟ ଏହି ମହାମୂଲ୍ୟ ଗ୍ରନ୍ଥ ଭାରତର ବିଭିନ୍ନ ଭାଷାରେ ଅନୂଦିତ ହୋଇଅଛି । ସେହି ପର୍ଯ୍ୟାୟରେ ଅଧ୍ୟାପକ ବ୍ରହ୍ମା ଏହା ଅନୁବାଦ କରିଥିଲେ । ଏଥିରେ ଅନେକ ନୂଆକଥା ଅଛି । ଜଣେ ବୁଢ଼ାଲୋକ, ଗୋଟିଏ ଶବ ଇତ୍ୟାଦି ଦେଖି ବୁଦ୍ଧଦେବ ସଂସାର ବିରାଗୀ ହୋଇଥିଲେ ବୋଲି ଯାହା ଆମେ ପଢ଼ିଥାଉ, ସେସବୁ ମିଛ କଥା ବୋଲି ଏଥିରେ ପ୍ରତିପାଦନ କରାଯାଇଛି ।

୧୯- ଓଡ଼ିଆ ସାହିତ୍ୟରେ ପ୍ରକୃତି(୧୯୫୮) । ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ଏ ବିଷୟରେ ଏକ ପାଠଚକ୍ର ହୋଇଥିଲା । ସେତେବେଳେ

ଲେଖାଯାଇଥିବା କ୍ଷୁଦ୍ର ପ୍ରବନ୍ଧ ସଙ୍ଗୃହୀତ କରାଯାଇ, ପରେ ଏ ପୁସ୍ତକ ପ୍ରକାଶ ପାଇଥିଲା । ଏହାର ପ୍ରଥମ ସଂସ୍କରଣରେ କେତେ ଅଂଶ ଯୋଗ କରାଯାଇ ୧୯୭୭ରେ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରାଯାଇଥିଲା ।

୧୦- ଇଚ୍ଛାବତୀ (୧୯୬୦) ରାଜ୍ୟ ସଂଗ୍ରହାଳୟରେ ଯେଉଁ ସବୁ ତାଳପତ୍ର ପୋଥି ରକ୍ଷିତ ଅଛି, ତହିଁରୁ ପ୍ରାଚୀନ ଓଡ଼ିଆ କାବ୍ୟ ପୋଥିମାନଙ୍କୁ ସମ୍ପାଦନା କରି, ବିସ୍ତୃତ ମୁଖବନ୍ଧ ସହ ପ୍ରକାଶ କରିବାକୁ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଏକ ଯୋଜନା ପ୍ରସ୍ତୁତ କରିଥିଲେ । ସେ ଅନୁସାରେ ଘୁମୁସରର ରାଜକବି ଧନଞ୍ଜୟ-ଭଞ୍ଜଙ୍କ ଇଚ୍ଛାବତୀ ଏବଂ ଅନଙ୍ଗରେଖା, ଏ ଦୁଇଟି କାବ୍ୟର ସମ୍ପାଦନା ଦାୟିତ୍ୱ ଅଧ୍ୟାପକ ବ୍ରହ୍ମାଙ୍କୁ ଦିଆଯାଇଥିଲା । ଏ କାବ୍ୟର ମୁଖବନ୍ଧ ବଡ଼ ଉପାଦେୟ ।

୧୧- ଅନଙ୍ଗରେଖା (୧୯୬୦) ଉପର କାବ୍ୟର ସୂଚନା ଦ୍ରଷ୍ଟବ୍ୟ । ଏହାର ମୁଖବନ୍ଧରେ ଆଲୋଚିତ ହୋଇଥିବା କବିଙ୍କ ଧର୍ମମତ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

୧୨- ଚିଲିକା ଓ ରାଧାନାଥ (୧୯୬୧) ଅଧ୍ୟାପକ ଜୀବନ ଆରମ୍ଭରେ ଚିଲିକା ଉପରେ ଲେଖା ଯାଇଥିଲା "ଚିଲିକା ବିଚାର" । ସମୟକ୍ରମେ ସଂସ୍କୃତ ସାହିତ୍ୟ ଏବଂ ଇଂରାଜୀ ସାହିତ୍ୟର ଅଧିକ ଅଧ୍ୟୟନ ଫଳରେ ବହୁ ନୂତନ ତଥ୍ୟ ସମାବେଶ କରି ଏ ପୁସ୍ତକ ଲେଖାଯାଇଥିଲା । ରାଧାନାଥଙ୍କ ଉପରେ ବିଭିନ୍ନ କବିଙ୍କ ପ୍ରଭାବ ଏଥିରେ ବିଚକ୍ଷଣ ଭାବରେ ପ୍ରଦର୍ଶିତ ହୋଇଅଛି ।

୧୩- ବାପୁଙ୍କ ଆଶୀର୍ବାଦ— ମହାତ୍ମାଗାନ୍ଧି ଦେଇଥିବା କେତେଗୁଡ଼ିଏ ଉପଦେଶକୁ ନେଇ ହିନ୍ଦୀରେ ଏକ ପୁସ୍ତକ ପ୍ରକାଶ ପାଇଥିଲା । ମୂଳ ପୁସ୍ତକର ପ୍ରକାଶକଙ୍କ ଅନୁରୋଧକ୍ରମେ ଅଧ୍ୟାପକ ବ୍ରହ୍ମା ଓଡ଼ିଆରେ ଏହାକୁ ଅନୁବାଦ କରିଥିଲେ ।

୧୪- ଓଡ଼ିଆ କବିତାର ଛନ୍ଦ (୧୯୬୬) ବ୍ରହ୍ମପୁର - ଖଲ୍ଲିକୋଟ କଲେଜରେ ଓଡ଼ିଆ କବିତାର ଛନ୍ଦ ଉପରେ ସୁଦୀର୍ଘ ମୌଖିକ ଭାଷଣ ଦିଆଯିବା ପରେ ତାକୁ ସଂପ୍ରସାରିତ କରାଯାଇଥିଲା । ଅତି ପ୍ରାଚୀନ କାଳରୁ ବର୍ତ୍ତମାନ

କାଳ ପର୍ଯ୍ୟନ୍ତ ଓଡ଼ିଆ ପଦ୍ୟ ସାହିତ୍ୟରେ ଯେଉଁ ସବୁ ଛନ୍ଦ ଦେଖାଯାଏ, ସେ ସବୁର କ୍ରମବିକାଶ, ଐତିହାସିକ ଏବଂ ତାତ୍ତ୍ୱିକ ଦୃଷ୍ଟି କୋଣରୁ, ଏଥିରେ ପ୍ରଦର୍ଶିତ ହୋଇଅଛି ।

୧୫- ରାଧାନାଥଙ୍କ ଉଷା (୧୯୬୯)

କବିବର ରାଧାନାଥଙ୍କ ଉଷା କାବ୍ୟ ଗୋଟିଏ କ୍ଷୁଦ୍ର କାବ୍ୟ । ଏହା ଉପରେ ପ୍ରାୟ ଦୁଇଶହ ପୃଷ୍ଠାର ବିରାଟ ଆଲୋଚନା ଲେଖିବା ଅଳ୍ପ ପାଣ୍ଡିତ୍ୟ ଓ ପରିଶ୍ରମ ସାଧ୍ୟ ନୁହେ । ପ୍ରଥମଥର ପାଇଁ ଅଧ୍ୟାପକ ତ୍ରିପାଠୀ ଏଥିରେ ଦେଖାଇଛନ୍ତି ଯେ, ଗ୍ରୀକ୍ ସାହିତ୍ୟରୁ ଯଦିଓ କାବ୍ୟର ଗଳ୍ପଟି ଗୃହୀତ ହୋଇଅଛି, ତଥାପି କାବ୍ୟ ପୁରୁଷର ଶରୀରରେ ରକ୍ତ ସଞ୍ଚାଳନ କରାଇବା ପାଇଁ ବାଣଭଟ୍ଟଙ୍କ କାଦମ୍ବରୀ କାବ୍ୟରୁ ଏବଂ କାଳିଦାସ ସାହିତ୍ୟରୁ ଅନେକ କଥା ଗୃହୀତ ହୋଇଅଛି । ଅନେକ ଆଲୋଚକଙ୍କର ମତ, ଯୁକ୍ତିର ସହିତ ଏଥିରେ ଖଣ୍ଡନ କରାଯାଇଛି ।

୧୬- ଉଷା (୧୯୭୯)

କବିବର ରାଧାନାଥଙ୍କ ଉଷା କାବ୍ୟର ମୂଳପାଠ, ପ୍ରତିପଦର ସରଳ ଓଡିଆ ଅନୁବାଦ ଏବଂ ଭୂମିକା ଏଥିରେ ସନ୍ନିବେଶିତ ।

୧୭-ଶକୁନ୍ତଳା ଓ ଗଙ୍ଗାଧର ( ୧୯୭୧)

ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ 'ପ୍ରଣୟ ବଲ୍ଲରୀ' କାବ୍ୟ ଉପରେ ଏହାହିଁ ହେଉଛି ବୃହତ୍ତମ ଆଲୋଚନା । ସ୍ଥାନେ ସ୍ଥାନେ ଶକୁନ୍ତଳା ନାଟକର ଗଦ୍ୟ ବା ପଦ୍ୟ ଅଂଶମାନଙ୍କୁ କପରି ଓଡ଼ିଆ ଛନ୍ଦରେ ରୂପାୟିତ କରାଯାଇଛି, ତାହା ଏଥିରେ ଅତି ପ୍ରାଞ୍ଜଳ ଓ ସୁନ୍ଦର ଭାବରେ ଦେଖାଇ ଦିଆଯାଇଛି । ଅଭିଜ୍ଞାନ ଶାକୁନ୍ତଳମ୍ ନାଟକର ଏ କାବ୍ୟଟି ଗୋଟିଏ ଅନୁସରଣ ହୋଇଥିଲେ ମଧ୍ୟ ପ୍ରତିଭାଶାଳୀ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ ଓ ବୈଶିଷ୍ଟ୍ୟ ଏଥିରେ କପରି ଫୁଟିଉଠିଛି, ତାହା ବିଶଦ ଭାବରେ ପ୍ରଦର୍ଶିତ ହୋଇଅଛି ।

୨୮- ନିବନ୍ଧମାଳା (୧୯୬୧)

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ବହୁ ପ୍ରବନ୍ଧର ଏହା ହେଉଛି ମୁକ୍ତ ଅନୁବାଦ । ପ୍ରତ୍ୟେକ ପ୍ରବନ୍ଧର ପ୍ରକାଶଭଙ୍ଗୀ, ଚିନ୍ତାଧାରା, ବୌଦ୍ଧିକ ଚେତନା ଓ ଭାଷାଶୈଳୀ ପାଠକମାନଙ୍କୁ ଉଦ୍ଦୀପିତ କରିଥାଏ । କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଏ ଅନୁବାଦ ଦାୟିତ୍ୱ ଦିଆଯାଇଥିଲା ।

୨୯- ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର (୧୯୬୨)

କୌଣସି ଏକ ଭଞ୍ଜ ଜୟନ୍ତୀ ସଭାରେ ଜଣେ ବକ୍ତା କହିଥିଲେ ଯେ, ଭଞ୍ଜ ସାହିତ୍ୟରେ ଦେଶର, ସମାଜର ଓ ସାଧାରଣ ଜୀବନର ଚିତ୍ର ଦେଖିବାକୁ ମିଳେନାହିଁ । ଏହି ମତକୁ ମିଥ୍ୟାରୂପେ ପ୍ରମାଣିତ କରିବା ପାଇଁ ଗୋଟିଏ ପ୍ରବନ୍ଧ ଲେଖାଯାଇ ଥିଲା । ପରେ ଅନ୍ୟ ଅନେକ ସାହିତ୍ୟ ସମାଲୋଚନା ମୂଳକ ପ୍ରବନ୍ଧ ଏହି ମୂଳ ପ୍ରବନ୍ଧ ସଙ୍ଗେ ସଂଯୁକ୍ତ କରାଯାଇ ପୁସ୍ତକ ପ୍ରକାଶ କରାଯାଇଥିଲା । ତେବେ, ପ୍ରଥମ ପ୍ରବନ୍ଧଟିର ନାମ ହଠାତ୍ ମନରେ କୌତୂହଳ ସୃଷ୍ଟି କରୁଥିବାରୁ, ପୁସ୍ତକ ପାଇଁମଧ୍ୟ ସେହି ନାମଟି ସ୍ଥିର କରାଗଲା । ଓଡ଼ିଆ ରୀତିଯୁଗ ସାହିତ୍ୟର ବିଭିନ୍ନ ଦିଗ ସମ୍ପର୍କରେ ଜାଣିବା ପାଇଁ ଏ ପୁସ୍ତକରେ ବହୁତଥ୍ୟ ପରିବେଷିତ ହୋଇଅଛି ।

୩୦- ଗୀତାର ପ୍ରଥମଶ୍ଳୋକ (୧୯୬୨)

ଲେଖକ କଲେଜରେ ପଢୁଥିବା ବେଳେ ପିତାଙ୍କଠାରୁ ବହୁଦିନ ଧରି ଶ୍ରୀମଦ୍ ଭଗବଦ୍ ଗୀତାର ପ୍ରଥମ ଶ୍ଳୋକଟିର ଅର୍ଥବ୍ୟାଖ୍ୟାନ ଶୁଣିଥିଲେ । ଅନେକ ଦିନ ପରେ ବ୍ରହ୍ମପୁରଠାରେ ଶ୍ରୀଯୁକ୍ତ ଗୋବିନ୍ଦ ରୈଧୁରୀଙ୍କ ଶ୍ରୀ ଜଗନ୍ନାଥ ମନ୍ଦିରରେ ଏହା ଉପରେ ଭାଷଣ ଦେଇ ପୁସ୍ତକ ଆକାରରେ ଏହା ପ୍ରକାଶ କରିଥିଲେ । ପ୍ରଥମ ସଂସ୍କରଣରେ ବହୁ ଅଂଶ ଯୋଗ କରି ଏବଂ ପ୍ରଥମ ସଂସ୍କରଣରେ କେତେକ ପରିବର୍ତ୍ତନ କରି, ପରିବର୍ଦ୍ଧିତ ଓ ପରିମାର୍ଜିତ ୨ୟ ସଂସ୍କରଣ ୧୯୭୭ରେ ପ୍ରକାଶ କରିଥିଲେ ।

୩୧- ବୈଦେହୀଶ ବିଳାସ (୧ମ ଅଙ୍କ) (୧୯୭୪)

ଓଡ଼ିଶା ସରକାର ବୈଦେହୀଶ ବିଳାସ ଉପରେ ଟୀକା ଲେଖିବା ପାଇଁ ଅଧ୍ୟାପକ ବ୍ରହ୍ମାଙ୍କୁ ନିଯୁକ୍ତ କରିଥିଲେ । ୧୯୬୮ ରେ ପ୍ରଥମ ଛବିଶ ଛାନ୍ଦର ଟୀକାର ପାଣ୍ଡୁଲିପି ମୁଦ୍ରାଯନ୍ତ୍ରକୁ ଯାଇଥିଲା ଏବଂ ୧୯୭୪ରେ ପୁସ୍ତକ ଭାବରେ ପ୍ରକାଶ ପାଇଥିଲା । ପ୍ରାୟ ଏକହଜାର ପୃଷ୍ଠାବ୍ୟାପୀ ଏ ସୁଦୃଶ୍ୟ ଗ୍ରନ୍ଥର ମୂଲ୍ୟ ବିଅାଳିଶ ଟଙ୍କା । ଏଥିରେ ଏଭଳି କେତେକ ବ୍ୟାଖ୍ୟାନ ଦିଆଯାଇଛି, ଯାହା ଅଧ୍ୟାପକ ବ୍ରହ୍ମାଙ୍କ ପର୍ଯ୍ୟନ୍ତ ଟୀକାକାରମାନେ ଓ ପାଠକମାନେ ଜାଣିନଥିଲେ । ପ୍ରଥମ ଛାନ୍ଦର ପ୍ରଥମ ଓ ଦ୍ୱିତୀୟ ପଦର ଆଠ ଆଠୋଟି ଦେବତା ପକ୍ଷରେ ଅର୍ଥ, ନବମ ଛାନ୍ଦର ପ୍ରଥମ ପଦରେ ସ୍ୱର୍ଗଗଙ୍ଗା, ମର୍ତ୍ତ୍ୟଗଙ୍ଗା ଓ ପାତାଳ ଗଙ୍ଗା ପକ୍ଷୀୟ ତିନୋଟି ଅର୍ଥ, ଦଶମ ଛାନ୍ଦର ପ୍ରଥମ ପଦର ପଚିଶ ଗୋଟି ଅର୍ଥ ଏବଂ ଏଭଳି ଅନେକ କଥା ଛାନ୍ଦ ରସିକମାନଙ୍କ ପାଇଁ ଏକାବେଳକେ ବିସ୍ମୟକର । ଏବେ ଏ କାବ୍ୟର ଦ୍ୱିତୀୟ ଅଙ୍କର ଟୀକା ଆରମ୍ଭ କରାଯାଉଛି । ଓଡ଼ିଶା ସରକାର ଏହାର ପ୍ରକାଶକ ।

୩୨- Visit puri (୧୯୭୫)

ପର୍ଯ୍ୟଟନ ବିଭାଗରେ ଥିଲାବେଳେ ପୁରୀ ସମ୍ପର୍କରେ ପର୍ଯ୍ୟଟକଙ୍କଠାରୁ ନାନାବିଧ ପ୍ରଶ୍ନ ଶୁଣିବାକୁ ପାଉଥିଲେ । ନିଜର ସେହି ଅନୁଭୂତି ଭିତ୍ତି ଉପରେ, ମୁଖ୍ୟତଃ ବିଦେଶୀ ପର୍ଯ୍ୟଟକଙ୍କ ପାଇଁ, ଇଂରାଜୀରେ ଏ ପୁସ୍ତକ ଲେଖିଥିଲେ । ଏହାର ଦୁଇଟି ସଂସ୍କରଣ ହୋଇଯାଇଛି । ୧୯୭୫ର ପ୍ରଥମ ସଂସ୍କରଣରେ ଅନେକ ନୂତନ ତଥ୍ୟ ସଙ୍କଳନ କରାଯାଇ ତିନି ବର୍ଷ ତଳେ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରାଯାଇଛି । ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ପକ୍ଷରୁ ଉଭୟ ସଂସ୍କରଣ ପ୍ରକାଶ ପାଇଛି ।

୩୩- ଭଞ୍ଜଭୂମିକା-(୧୯୭୫)

ଭଞ୍ଜଙ୍କ ଜୀବନୀ ଓ ତାଙ୍କ ବିଶାଳ ସାହିତ୍ୟର ବହୁମୁଖୀ ତଥା ଗଭୀର ଆଲୋଚନା ଦଶଖଣ୍ଡରେ ପ୍ରକାଶିତ ହେବା ଯୋଜନା ଦୃଷ୍ଟିରୁ ଏହି ପ୍ରଥମ ଖଣ୍ଡ ପ୍ରକାଶ ପାଇଛି । ପ୍ରତି ଖଣ୍ଡରେ ପ୍ରାୟ ୮୦୦ ପୃଷ୍ଠା ରହିବ ।

ଏହି ପ୍ରଥମଖଣ୍ଡରେ ଭଞ୍ଜଙ୍କ ଜୀବନୀ ତଥା ରଚନାବଳୀ ସମ୍ପର୍କରେ ସୁବିସ୍ତୃତ ଆଲୋଚନା କରାଯାଇଛି । ବହୁ ବିଶିଷ୍ଟ ଆଲୋଚକଙ୍କର ମତଖଣ୍ଡନ କରାଯାଇଛି ଏବଂ ଭଞ୍ଜସାହିତ୍ୟର ଉତ୍ପତ୍ତିସମ୍ପର୍କରେ ଗୋଟିଏ ନୂତନ କୌତୂହଳପ୍ରଦ ତଥ୍ୟମାନ ପ୍ରକାଶ କରାଯାଇଛି । ଏହାର ଦ୍ୱିତୀୟଖଣ୍ଡ ମୁଦ୍ରଣ ପାଇଁ ପ୍ରସ୍ତୁତ ।

୩୪- ଚିନ୍ତା ଓ ଚେତନା-(୧୯୬୬)

କେତେଗୁଡ଼ିଏ ପ୍ରବନ୍ଧର ସମଷ୍ଟି । ଖାଲି ସାହିତ୍ୟର ନୁହେଁ, ଅନ୍ୟ କେତେଯେ ଶାସ୍ତ୍ରରେ ମଧ୍ୟ ଅଧ୍ୟାପକ ବ୍ରହ୍ମାଙ୍କର ଅବଗାହ ଅଛି, ଏହି ପ୍ରବନ୍ଧ ପୁସ୍ତକ ତାର ପ୍ରମାଣ ପ୍ରଦାନ କରେ ।

୩୫- ଜଗନ୍ନାଥ ପୁରୀ ଦେଖନ୍ତୁ-(୧୯୮୬)

ଓଡ଼ିଶାର ପାଠକମାନଙ୍କୁ ପୁରୀ-ଧାମର ଦର୍ଶନୀୟ ସ୍ଥାନମାନଙ୍କ ସମ୍ପର୍କରେ ସମ୍ୟକ୍ ଧାରଣା ଦେବା ପାଇଁ ଏ ପୁସ୍ତିକା ରଚିତ । କେବଳ ଶ୍ରୀ ଜଗନ୍ନାଥ ମନ୍ଦିର ବା ସୁରମ୍ୟ ସାଗର ନୁହେଁ; ପୁରୀରେ ଅନ୍ୟ ଅନେକ ସ୍ଥାନ ମଧ୍ୟ ଆକର୍ଷଣୀୟ, ତାହା ଏଥିରେ ପ୍ରଦର୍ଶିତ ହୋଇଅଛି ।

୩୬- ବ୍ରଜରାଜ ଗ୍ରନ୍ଥାବଳୀ (୧୯୭୬)

ଖଡ଼ିଆଳର ସାହିତ୍ୟରଥୀ ରାଜା ବ୍ରଜରାଜଙ୍କୁ ମଧ୍ୟ 'ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ' କୁହାଯାଇପାରେ । ପ୍ରାଚୀନ ସାହିତ୍ୟ ପରଂପରାର ଗବେଷଣା କ୍ଷେତ୍ରରେ ଏ ପୁସ୍ତକ ମଧ୍ୟ ଉପାଦେୟ, ମୁଖବନ୍ଧରେ ଅଧ୍ୟାପକ ବ୍ରହ୍ମା ତାହା ଦର୍ଶାଇଛନ୍ତି । ଓଡ଼ିଶା ସରକାର ଏହାର ପ୍ରକାଶକ ।

୩୭- ଅଭିମନ୍ୟୁ ଗ୍ରନ୍ଥାବଳୀ (୧୯୭୭)

ମହାକବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ୧୯୭୭ ପର୍ଯ୍ୟନ୍ତ ଉପଲବ୍ଧ ରଚନାବଳୀ ଅଧ୍ୟାପକ ବ୍ରହ୍ମାଙ୍କ ଦ୍ୱାରା ସମ୍ପାଦିତ ହୋଇ ଦୁଇଗୋଟି ସୁଦୃଶ୍ୟଗ୍ରନ୍ଥରେ ପ୍ରକାଶିତ ହୋଇଅଛି । ଉଭୟ ଖଣ୍ଡର ପ୍ରକାଶକ-

ଓଡ଼ିଶା ସରକାର । ଗୋଟିଏ ଗୋଟିଏ ପଦକୁ କିପରି ବିଭିନ୍ନ ଭାବରେ ପଢ଼ାଯାଏ ଏବଂ ତହିଁରୁ କିପରି ନୂଆ ନୂଆ ଅର୍ଥ ବାହାରେ, ସେଥି ପ୍ରତି ମଧ୍ୟ ପାଦଟୀକାରେ ଦୃଷ୍ଟି ଦିଆଯାଇଛି ।

୩୮- ମଥୁରାମଙ୍ଗଳ (୧୯୮୦)

ଭକ୍ତଚରଣଙ୍କ ପ୍ରସିଦ୍ଧ କାବ୍ୟ ମଥୁରାମଙ୍ଗଳର କେତୋଟି ବଗ୍ଣ ବଗ୍ଣ ସୁନ୍ଦର ଟୀକା ଏଥିରେ ଅଛି । ମୁଖବନ୍ଧରେ ଭକ୍ତଚରଣ ଓ 'ଗୋପୀଭାଷା' କାବ୍ୟର ଲେଖକ ଦନାଇ ଦାସ କିପରି ସମକାଳୀନ ଥିଲେ (ଯାହାକି ସାଧାରଣରେ ଅପରିଚିତ ତଥ୍ୟ), ତାହା ପ୍ରଦର୍ଶିତ ହୋଇଅଛି ।

୩୯- ଓଡ଼ିଆ ସାହିତ୍ୟର ଇତିହାସ (୧୯୮୦)

କଲେଜ ପାଠ୍ୟକ୍ରମ ଅନୁସାରେ ଲିଖିତ । ଏଥିରେ ସାରଳାଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ଫକୀରମୋହନ ସେନାପତି, ରାଧାନାଥ ରାୟ ଓ ଗଙ୍ଗାଧର ମେହେରଙ୍କ ଉପରେ ବହୁତଥ୍ୟ ବଡ଼ ସଂକ୍ଷିପ୍ତ ଓ ସୁନ୍ଦର ଭାବରେ ଦିଆଯାଇଛି ।

୪୦- ରାସ ପଞ୍ଚାଧ୍ୟାୟୀ (୧୯୮୧)

ଓଡ଼ିଆ M. A ରେ ଜଗନ୍ନାଥ ଭାଗବତର ଏହି ଅଂଶ ପାଠ୍ୟଥିଲା ବେଳେ ଏହାଉପରେ ଏକ ଗଭୀର ପାଣ୍ଡିତ୍ୟ ପୂର୍ଣ୍ଣ ସମୀକ୍ଷା ଲେଖା ଯାଇଥିଲା । କେହି କେହି ଓଡ଼ିଆ ସମାଲୋଚକ, (ଜଗନ୍ନାଥ ଦାସଙ୍କ ସମସ୍ତର ମାନ୍ୟମାନ୍ୟ ପଣ୍ଡିତଙ୍କ ପରି) ତାଙ୍କ ବିଷୟରେ ଦେଖାଇ ଅଛନ୍ତି ଯେ, ଜଗନ୍ନାଥ ଦାସ ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ କରିବାକୁ ଯାଇ ଅନେକ ଭୁଲ କରିଛନ୍ତି ବା ଠିକ୍ କଥା ଲେଖି ପାରି ନାହାନ୍ତି । ଅଧ୍ୟାପକ ବ୍ରହ୍ମା ତାଙ୍କର ଏ ପୁସ୍ତକରେ ଏଭଳି ବିରୋଧୀ ମତଗୁଡ଼ିକୁ ଗାମ୍ଭୀର୍ଯ୍ୟରେ ଖଣ୍ଡନ କରି, ଜଗନ୍ନାଥଙ୍କ ଅନୁବାଦର ଯଥାର୍ଥତା ଦେଖାଇ ଅଛନ୍ତି ।

୪୧- ଓଡ଼ିଆ ସାହିତ୍ୟର ଇତିହାସ (୧୯୬୮)
କଲେଜର ପାଠ୍ୟ କ୍ରମ ଅବଲମ୍ବନରେ ଲିଖିତ । ଏଥିରେ ପ୍ରାଚୀନ ଓଡ଼ିଆ ସାହିତ୍ୟର ତିନିଜଣ ମହାରଥୀ,—ସାରଳା, ବଳରାମ ଓ ଜଗନ୍ନାଥଙ୍କ ଉପରେ ବହୁ ତଥ୍ୟ ପରିବେଷିତ ହୋଇଅଛି ।

୪୨- ସମରତରଙ୍ଗ (୧୯୮୨)
ଓଡ଼ିଶାର 'ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ' ଭାବରେ ମଧ୍ୟ ସମ୍ମାନିତ ଢେଙ୍କାନାଳ ମହାକବି ବ୍ରଜନାଥଙ୍କ, ଯୁଦ୍ଧବର୍ଣ୍ଣନା ମୂଳକ ଅପୂର୍ବ କାବ୍ୟର ପାଣ୍ଡିତ୍ୟ ପୂର୍ଣ୍ଣ ସମୀକ୍ଷା (ମୂଳ ପାଠ ସହିତ) । ଏଥିରେ ବହୁ ପୂର୍ବବର୍ତ୍ତୀ ବରେଣ୍ୟ ଆଲୋଚକଙ୍କ କେତୋଟି ବଳିଷ୍ଠ ମତର ପ୍ରବଳ ଖଣ୍ଡନ କରାଯାଇଛି । ପୁଣି ଆଗରୁ କୌଣସି ଅଧ୍ୟାପକ ବା ଆଲୋଚକ ଦେଖାଇ ନଥିବା କେତେକ କଥା ବଡ଼ ଚମତ୍କାର ଭାବରେ ପ୍ରଦର୍ଶିତ ହୋଇଅଛି,—ଯଥା, ଏହି 'ଯୁଦ୍ଧ କାବ୍ୟ'ରେ ଭକ୍ତିସାହିତ୍ୟର ପ୍ରଭାବ ।

୪୩- ରାଜକବି ରାଧାମୋହନ ରାଜେନ୍ଦ୍ର (୧୯୮୩)
ଚିକିଟିରାଜ୍ୟର ଏହି ପ୍ରସିଦ୍ଧ ରାଜକବିଙ୍କ ଶତବାର୍ଷିକ ଉତ୍ସବ ବେଳେ ଏହା ଲିଖିତ ହୋଇଥିଲା ।

୪୪- ଚିଲିକାଚନ୍ଦନ (୧୯୮୩)
ଲେଖକଙ୍କର ଏହା ହେଉଛି ପ୍ରସିଦ୍ଧ "ଚିଲିକା" କାବ୍ୟ ଉପରେ ଗମ୍ଭୀର ଆଲୋଚନା । ଏଥିରେ ବିସ୍ତୃତ ଆଲୋଚନା ସହିତ ସମଗ୍ର କାବ୍ୟର ଯେଉଁଭଳି ବହୁମୁଖୀ ଟୀକା ଦିଆଯାଇଛି, ତାହା ଅଧ୍ୟାପକ ଜୀବନର ବହୁସାଧନାର ଫଳ ।

୪୫- ଗୋପୀନାଥବଲ୍ଲଭ ନାଟକ (୧୯୫୯)
ପାରଳାଖେମୁଣ୍ଡିର ପ୍ରସିଦ୍ଧ କବି ରଘୁନାଥ ପରିଚ୍ଛାଙ୍କର ଏହି ନାଟକ

ସମ୍ପାଦିତ ହୋଇଅଛି । ଏହାର ମୁଖବନ୍ଧରେ ବହୁତଥ୍ୟ ପରିବେଷିତ ହୋଇଅଛି ।

୪୬- କବିଶ୍ରୀମାଳା (୧୯୬୨)
ହିନ୍ଦୀରେ କେତେକ ପ୍ରବନ୍ଧ ଲେଖିବାପରେ ଅଧ୍ୟାପକ ବ୍ରହ୍ମା ଆଜିର ବର୍ଷୀୟାନ୍ କବି ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ଅନେକ କବିତାର ହିନ୍ଦୀ ଅନୁବାଦ କରି ଏବଂ ତାଙ୍କର ସାରସ୍ୱତ ପ୍ରତିଭା ଉପରେ ଦୀର୍ଘ ଆଲୋଚନା ଦେଖି ଏହି ପୁସ୍ତକ ପ୍ରକାଶ କରିଇଛନ୍ତି । ଏହା ଅଧ୍ୟାପକ ବ୍ରହ୍ମାଙ୍କର ପ୍ରଥମ ହିନ୍ଦୀ ଭାଷାରେ ଲିଖିତ ପୁସ୍ତକ ।

୪୭- କୁମାରୀ ସାହିତ୍ୟ (୧୯୪୬)
ଉଚ୍ଚ ଶ୍ରେଣୀର ଓଡ଼ିଆ ପାଠ୍ୟ ରୂପେ ଲିଖିତ ହୋଇଥିଲା ।

୪୮- ଗଣଗାନଦଶକମ୍ (୧୯୮୫)
ସଂସ୍କୃତ ଭାଷାର ବିବିଧ ବିଶେଷତ୍ୱ ଏହି ପୁସ୍ତିକାରେ ପ୍ରକାଶିତ । ଏହା ଅଧ୍ୟାପକ ବ୍ରହ୍ମାଙ୍କର ପ୍ରଥମ ପ୍ରକାଶିତ ରଚନା ।

୪୯- ମାଳତୀମାଳା (ଯନ୍ତ୍ରସ୍ଥ) ।
ଏଥିରେ କେତେକ ସ୍ୱରଚିତ ଓ ବିଭିନ୍ନ ସମ୍ମିଳନରେ ପଠିତ ସଂସ୍କୃତ ଗୀତ ତଥା କବିତା ସମାବେଶିତ ।

୫୦- ଭଞ୍ଜ-ଚରିତାମୃତମ୍ (ଯନ୍ତ୍ରସ୍ଥ, (ବା ଭଞ୍ଜ ପଞ୍ଚାଶିକା) ।
ଏହି ସଂସ୍କୃତ କାବ୍ୟରେ ୫୦ଟି ଶ୍ଳୋକ ଅଛି ଏବଂ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ ଏଥିରେ ପରିବେଷିତ । ପ୍ରତି ଶ୍ଳୋକର ଦୁଇ ଦୁଇ ପାଦର ଶେଷ ଅକ୍ଷରଟିମାନ ସମାନ, ( ଯେଉଁପରି ପ୍ରାନ୍ତାନୁପ୍ରାସ ବିଶିଷ୍ଟ ରଚନା ବିଶାଳ ସଂସ୍କୃତ ସାହିତ୍ୟରେ ମଧ୍ୟ ଅତ୍ୟଳ୍ପ ଦେଖାଯାଏ । )

୫୧- କଳିଙ୍ଗ ଦେଶ ଶତକମ୍ (ଯନ୍ତ୍ରସ୍ଥ)
କଳିଙ୍ଗ ଦେଶ ବା ଓଡ଼ିଶାର ବହୁବିଧ ବିଶେଷତ୍ୱ ଓ ଗୌରବ

୧୦୦ଟି ସଂସ୍କୃତ ଶ୍ଳୋକରେ ଲେଖାଯାଇଛି । ପ୍ରତି ଶ୍ଳୋକର ଶେଷ ପାଦ ହେଉଛି (କଳିଙ୍ଗ ଦେଶଃ ସୁଚିରଂ ବିଜୟତି) ।

୫୨- The Theory of Avataars (ଯନ୍ତ୍ରସ୍ଥ) ।
ଅବତାର ତତ୍ତ୍ୱ ଉପରେ ଏହି ଇଂରାଜୀ ପୁସ୍ତକ ବହୁ ଗବେଷଣା ଉପରେ ଆଧାରିତ ।

ଏହି ସବୁ ବ୍ୟତୀତ ଆହୁରି ୧୫ ଖଣ୍ଡି ପୁସ୍ତକର ପାଣ୍ଡୁଲିପି ରହିଅଛି । ବିଭିନ୍ନ ସ୍ଥାନରୁ ବହୁ ଉପାଧି, ଉପାୟନ ଓ ମାନପତ୍ର ପାଇଛନ୍ତି । ପୃଥିବୀର ବହୁଦେଶରୁ ପ୍ରଶଂସା ପତ୍ରମାନ ମଧ୍ୟ ପାଇଛନ୍ତି ।

# ଜୀବନ ବିବରଣୀ

୧୯୨୦-ଫେବ୍ରୁୟାରି କୋଡ଼ିଏ ତାରିଖ

ଜନ୍ମସ୍ଥାନ-ଗଞ୍ଜାମ-ଭଞ୍ଜନଗର ନିକଟର ଷଡ଼ଙ୍ଗୀପଲ୍ଲୀ ଗ୍ରାମ୍ ।

୧୯୩୬-ଆସିକା (ଗଞ୍ଜାମ) ହାଇସ୍କୁଲରୁ ମାଟ୍ରିକପାସ୍ ।

୧୯୪୦-ପାରଳାଖେମୁଣ୍ଡି କଲେଜରୁ ବି.ଏ ପାସ୍

୧୯୪୧-୪୨-ବାଣପୁର ହାଇସ୍କୁଲ ଶିକ୍ଷକ ।

୧୯୪୨-୪୩ କଟକ (ରାଧାନାଥ) ଟ୍ରେନିଂ କଲେଜରୁ ଡ଼ି ଇଡ଼ ପାସ୍ ।

୧୯୪୩-୪୪-ଗଞ୍ଜାମ-ଦିଗପହଣ୍ଡି ହାଇସ୍କୁଲ ପ୍ରଧାନ ଶିକ୍ଷକ

୧୯୪୫-୪୭-କଟକ ଟ୍ରେନିଂ (ଶିକ୍ଷକ) ସ୍କୁଲରେ ଶିକ୍ଷକ ।

୧୯୪୭-୫୦-କଟକ ଖ୍ରୀଷ୍ଟ କଲେଜରେ ଓଡ଼ିଆ ଅଧ୍ୟାପକ

୧୯୫୦-୫୮-ରେଭେନ୍ସା କଲେଜରେ ଓଡ଼ିଆ ଅଧ୍ୟାପକ ।

୧୯୫୮-୬୬-ଏ ମଧ୍ୟରେ ଏକ ବର୍ଷଛଡା, ସାହିତ୍ୟ, ସଙ୍ଗୀତ ଓ ଲଳିତକଳା ଏକାଡେ଼ମୀ (ଓଡ଼ିଶା)ର ସଂପାଦକ ।

୧୯୬୬-ଉପରର ଦାୟିତ୍ୱ ସହିତ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗର ଡେପୁଟି ଡ଼ାଇରେକ୍ଟର ।

୧୯୬୮-୬୯-ଏ ମଧ୍ୟରେ ଦୀର୍ଘ ଏଗାରମାସ ଏଟାରିଟିସ-ଧର ଛୁଟୀରେ ରହିଲେ ।

୧୯୬୯-୭୬-ସାତବର୍ଷରୁ ଅଧିକ କାଳ ପର୍ଯ୍ୟଟନ ବିଭାଗରେ ଉଚ୍ଚ କର୍ମଚାରୀ ଏବଂ ପ୍ରାୟ ଦୁଇବର୍ଷ ଧରି Chief Editor, Orissa orienral Texts Series.

୧୯୭୭-୭୮-ରେଭେନ୍ସା କଲେଜକୁ ପ୍ରତ୍ୟାବର୍ତ୍ତନ ଓ ୭୮ ମାର୍ଚ୍ଚ ପହିଲରେ ଅବସର ଗ୍ରହଣ ।

୧୯୭୮-ଆଜି ପର୍ଯ୍ୟନ୍ତ-ନିଜ ବାସଭବନରେ ପ୍ରତିଷ୍ଠିତ P.G. Coaching Centreର ଡାଇରେକ୍ଟର ।

୧୯୮୩-ଭୁବନେଶ୍ୱରସ୍ଥ Regional College of Manag-ementରେ ପର୍ଯ୍ୟଟନ ବିଭାଗର Professor and Head of Dept.

୧୯୬୮ରୁ ଆଜି ପର୍ଯ୍ୟନ୍ତ ଅନ୍ୟ ଅନେକ ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ଶିକ୍ଷାଗତ ସଂସ୍ଥାର ଦାୟିତ୍ୱବହନ ।